ସଂବାଦପତ୍ରରେ ସମସାମୟିକ ସମସ୍ୟାମୂଳକ
ପ୍ରବଂଧମାନଙ୍କ ସଂକଳନ ଏହି
ପ୍ରଗତି ଓ ପରଂପରା ।
ଲେଖିକାଙ୍କ ନିଜସ୍ୱ ମୌଳିକ ତଥା
ନିର୍ଭୀକ ଶାଣିତ ଦୃଷ୍ଟିଭଙ୍ଗୀରେ
ପ୍ରବନ୍ଧଗୁଡ଼ିକ ରସାଣିତ ।
ଗଳ୍ପ ରଚନାରେ ମଧ୍ୟ ସିଦ୍ଧହସ୍ତା
ଶ୍ରୀମତୀ ମହାନ୍ତିଙ୍କର ଏହି ପ୍ରବନ୍ଧସମୂହ
ଓଡ଼ିଶାର ପାଠକଗୋଷ୍ଠୀଙ୍କ
ଆଦର ଲଭିବା ସହ ସମ୍ବାଦପତ୍ର ପାଇଁ
ଲିଖିତ ସ୍ତମ୍ଭସାହିତ୍ୟ ଇତିହାସରେ
ଏକ ବଳିଷ୍ଠ ସଂଯୋଜନ ଭାବରେ
ନିଶ୍ଚୟ ଗୃହୀତ ହେବ ।

-ପ୍ରକାଶକ

ପ୍ରଗତି ଓ ପରଂପରା
(ପ୍ରବନ୍ଧ ସଂକଳନ)

ବାସନ୍ତୀ ମହାନ୍ତି
ପ୍ରଥମ ସଂସ୍କରଣ-୨୦୦୫
ପ୍ରକାଶକ : ପ୍ରତୀଚୀ ପ୍ରକାଶନ, ଆର.ସି.ଚର୍ଚ୍ଚ ରୋଡ୍,ବ୍ରହ୍ମପୁର
ଅକ୍ଷର : ସରସ୍ୱତୀ, ଗୌରୀ ନଗର, ଭୁବନେଶ୍ୱର
ପ୍ରଚ୍ଛଦ : ରମାକାନ୍ତ ସାମନ୍ତରାୟ
ମୁଦ୍ରଣ : ଦିବ୍ୟ ମୁଦ୍ରଣୀ, ଭୁବନେଶ୍ୱର
ପୃଷ୍ଠା ସଂଖ୍ୟା : ୧୨୮
ମୂଲ୍ୟ : ୭୫/-

PRAGATI O PARAMPARA
(Collection of Essays)

Basanti Mohanty
1st Edition : 2005
Published by Pratichi ,R.C.Church Road,Brahmpur
DTP: Saraswati,Gouri Nagar,Bhubaneswar
Cover Design : Ramakanta Samantray
Printed at : Divya Mudrani,Bhubaneswar
**No. of Page : 128**

**Price : Rs. 75/-**

ଯାହାଙ୍କର ପ୍ରେରଣା ଓ ପ୍ରବୋଦନା
ମୋ ପାଇଁ ମନ୍ତ୍ର ଶକ୍ତି ...
ଅନୁପମ ଭାରତର ପ୍ରାକ୍ତନ ସଂପାଦକ
ତଥା ସମାଜର ପରିଚାଳନା ସଂପାଦକ
ପୂଜ୍ୟ ଶ୍ରୀ ଶରତ ମିଶ୍ରଙ୍କୁ
ପ୍ରଗତି ଓ ପରଂପରା ସମର୍ପଣ କରୁଛି ।

ବାସନ୍ତୀ

# ମୁଖବନ୍ଧ

ସାଂପ୍ରତିକ ସମ୍ବାଦପତ୍ରମାନଙ୍କୁ ଆଧାର କରି ଗଢ଼ି ଉଠୁଥିବା ଏକ ରୁଚିଶୀଳ ଓ ସମ୍ଭ୍ରାନ୍ତ ପରଂପରା 'ସ୍ତମ୍ଭ ସାହିତ୍ୟ' ସାହିତ୍ୟର ବିବର୍ତ୍ତନୀରେ ଏକ ଆକର୍ଷଣୀୟ ବିଭବ। ସୃଜନଶୀଳ ସାହିତ୍ୟ ସାଧକଟିର ବୌଦ୍ଧିକ କସରତ ପାଇଁ ଏହାଠାରୁ ବଳି ଉତ୍କୃଷ୍ଟ ସହଜଲବ୍ଧ ଓ ସର୍ବବ୍ୟାପୀ ପ୍ରଶସ୍ତ ପରିସର ବୋଧହୁଏ ଆଉ ନାହିଁ। ମୋ ନିବନ୍ଧ ସଂକଳନ ପ୍ରଗତି ଓ ପରମ୍ପରାର କଳେବର ମଣ୍ଡନ କରିଥିବା ନିବନ୍ଧଗୁଡ଼ିକ ଏଇ ନବ୍ୟ ପରଂପରାର ଅଂଶବିଶେଷ। ଏଗୁଡ଼ିକ ଗତ ପାଞ୍ଚବର୍ଷ ମଧ୍ୟରେ ସମସାମୟିକ ସମ୍ବାଦ ପତ୍ର, ସମାଜ, ଅନୁପମ ଭାରତ, ସମ୍ବାଦ, ସର୍ବୋଦୟ ଓ ଦିଲ୍ଲୀରୁ ପ୍ରକାଶିତ ଯୋଜନା ପତ୍ରିକାରେ ପ୍ରକାଶିତ ହୋଇସାରିଛି। ଏଥିରୁ ଅଧିକାଂଶ ସମସାମୟିକ ଘଟଣାବଳିକୁ ଆଧାର କରିଥିବା ବେଳେ ଆଉକିଛି ମଣିଷର ଚିରନ୍ତନୀ ଭାବାବେଗକୁ ଭିତ୍ତିଭୂମି କରି ଗଢ଼ି ଉଠିଛି। ନିବନ୍ଧଗୁଡ଼ିକ ପ୍ରକାଶିତ ହେବା ପରେ ଓଡ଼ିଶାର କୋଣ ଅନୁକୋଣରୁ ପ୍ରଚୁର ପାଠକୀୟ ଶ୍ରଦ୍ଧା ବହନ କରି ଆଣିଥିବା ଚିଠିଗୁଡ଼ିକ ଏ ପ୍ରକାର ସୃଜନୀ କଳାରେ ଲେଖନୀ ଚାଳନା କରିବା ପାଇଁ ମୋତେ ଯଥେଷ୍ଟ ଆତ୍ମବିଶ୍ୱାସ ପ୍ରଦାନ କରିଛି। ସମସାମୟିକ ପୃଷ୍ଠଭୂମିରେ ରଚିତ ହୋଇଥିଲେ ସୁଦ୍ଧା ଏଥିରେ ଏକ ସାର୍ବକାଳୀନ ଓ ସାର୍ବଜନୀନ ଆବେଦନ ଅନୁଭୂତ ହେଉଥିବାର ହୃଦ୍‌ବୋଧ କରି ମୋର ବହୁ ସହୃଦୟ ବନ୍ଧୁ ଓ ଶୁଭେଚ୍ଛୁବୃନ୍ଦ ଏହାକୁ ଏକ ସଂକଳନ କରିବା ପାଇଁ ସସ୍ନେହ ତାଗିଦ୍ କରିଛନ୍ତି। ମୋ ନିବନ୍ଧଗୁଡ଼ିକର ଏକ ସଂକଳିତ ରୂପ ପାଇଁ ସ୍ୱପ୍ନ ଦେଖୁଥିବା ଓ ଅଦିନରେ ଆମ ଭିତରୁ ହଜିଯାଇଥିବା ମୋର ପରମ ହିତୈଷୀ ଦିବଂଗତ ଶିବରାମ ପାତ୍ରଙ୍କର ଆଶୀର୍ବାଦ ଏ ସଂକଳନଟିକୁ ତ୍ୱରାନ୍ୱିତ କରିବାର ମୁଁ ଅନୁଭବ କରିଛି।

ଏ ଅବସରରେ ଉପରୋକ୍ତ ସମ୍ବାଦ ପତ୍ରର ସମ୍ପାଦକମାନଙ୍କର ସହୃଦୟତା ମୋତେ ଏ ସୃଜନ ପାଇଁ ଉଦ୍‌ବୁଦ୍ଧ କରିଥିବାରୁ ସେମାନଙ୍କୁ ମୁଁ ହାର୍ଦ୍ଦିକ କୃତଜ୍ଞତା ଜ୍ଞାପନ କରୁଛି। ଶୁଭେଚ୍ଛୁ ଭୂପେନ୍ ମହାପାତ୍ର ଓ ଅର୍ଜ୍ଜୁନ ଦାସଙ୍କ ସଦିଚ୍ଛା ଓ ଆଶୀର୍ବାଦ ସଂକଳନ ପାଇଁ ଅମୃତତୁଲ୍ୟ ବୋଧ ହୋଇଛି। ସଂକଳନଟିକୁ ସର୍ବାଙ୍ଗ ସୁନ୍ଦର କରିବାପାଇଁ ଉଦୀୟମାନ ପ୍ରଚ୍ଛଦଶିଳ୍ପୀ ସ୍ନେହାସ୍ପଦ ରମାକାନ୍ତ ଓ ଶୋଭନାଙ୍କ ଅବଦାନକୁ ସ୍ମରଣ କରୁଛି।

ଶେଷରେ ପ୍ରକାଶକ ରାଜକିଶୋର ଦାସ ପାଣ୍ଡୁଲିପିଟିରେ ପ୍ରକାଶ ଦାୟିତ୍ୱ ବହନ କରିଥିବାରୁ ତାଙ୍କୁ ଏ ଅବସରରେ ଧନ୍ୟବାଦ ଦେଉଛି।

ସଂକଳନଟି ପାଠକମାନଙ୍କ ଦ୍ୱାରା ଯତ୍‌କିଞ୍ଚିତ୍ ଆଦୃତ ହେଲେ ଶ୍ରମସାର୍ଥକ ହେଲା ବୋଲି ଅନୁଭବ କରିବି।

ବାସନ୍ତୀ ମହାନ୍ତି

# ସୂଚୀ


**ସାହିତ୍ୟ**

ସାହିତ୍ୟ ଓ ଇଲୋକ୍ଟ୍ରୋନିକ୍ସ ଗଣମାଧ୍ୟମ ୭
ଶିଶୁର ବ୍ୟକ୍ତିତ୍ୱ ବିକାଶ ପାଇଁ ନାନାବାୟା ଗୀତ ୧୨
ନୀରବତାର ଭାଷା ୧୭
ସଙ୍କଟରେ ମାତୃଭାଷା ୨୦

**ସଂସ୍କୃତି**

ପ୍ରତିଭା ପୂଜା ଓ ପ୍ରତିମାପୂଜା ୨୪
ପ୍ରତିଭା ଓ ପ୍ରୋତ୍ସାହନ ୨୮
ପ୍ରଗତି ଓ ପରଂପରା ୩୨
ଆମ ପ୍ରଗତିର ପରିପନ୍ଥୀ ବୈରାଗ୍ୟ ୩୫
ପ୍ରବୃତ୍ତି ଓ ନିବୃତ୍ତିର ନିଗଡ଼ରେ କାର୍ତ୍ତିକ ବ୍ରତ ୩୯
ବଞ୍ଚିବାର କଳା ୪୩

**ଚରିତ୍ର**

ମାନବର ହିତଶତ୍ରୁ କ୍ରୋଧ ୪୬
ଲୋକ ଚରିତ୍ର ୪୯
ପ୍ରାକୃତିକ ବିପର୍ଯ୍ୟୟ ଓ ଆମ ଜାତୀୟ ଚରିତ୍ର ୫୨
ନୀତି ବ୍ୟକ୍ତିତ୍ୱ ଓ ରାଜନୀତି ୫୬

**ସାମାଜିକ ସମସ୍ୟା**

ଅର୍ଦ୍ଧାହାର ମୃତ୍ୟୁ ଓ ଅନାହାର ମୃତ୍ୟୁ ୬୦
ଜନ୍ମ ନିୟନ୍ତ୍ରଣ ବିଜ୍ଞାପନର କୁପ୍ରଭାବ ୬୪
ରାଜକ୍ଷମା - ଏକ ସୂକ୍ଷ୍ମ ଦୃଷ୍ଟିକୋଣ ୬୮
ଅବକ୍ଷୟ ମୂଲ୍ୟବୋଧ ଓ ବିବାହ ୭୧
ଶିଶୁ ନିର୍ଯ୍ୟାତନା ଏକ ସାମାଜିକ କଳଙ୍କ ୭୫
ଆଦିବାସୀ ପ୍ରଥା ବନାମ ପ୍ରଚାରଧର୍ମୀ ସାମ୍ବାଦିକତା ୭୯

**ନାରୀ**

ସାର୍ଥକ ନାରୀତ୍ୱ - ଏକ ଅନୁଚିନ୍ତା ୮୧
ଏକବିଂଶ ଶତାବ୍ଦୀ ଓ ନାରୀର ଆତ୍ମଚିନ୍ତନ ୮୫
ପ୍ରଗତିର ମାପକାଠିରେ ଆଦିବାସୀ ଓ ଅଣଆଦିବାସୀ ମହିଳା ୮୮
ରୂପକନ୍ୱାରର ଅଭିଯୁକ୍ତମାନେ ୯୧
ନାରୀ ସଶକ୍ତିକରଣ - ଏକ ବିହଙ୍ଗାବଲୋକନ ୯୪
ଯୁଗେ ଯୁଗେ ନାରୀ ୯୮

ନାରୀଜାଗରଣର ବିବର୍ତ୍ତନ ଧାରା ୧୦୫
ନାରୀ ରତ୍ନ ନୁହେଁ ଶକ୍ତି ୧୧୦
ନାରୀପାଇଁ ସାମାଜିକ ସୁରକ୍ଷା ଓ ବିବାହ ୧୧୪

**ଯୁବଜଗତ**

ଯୁବମାନସ-ଜଡ଼ତା ଓ ଜାଗୃତି ୧୧୮
ଆମ ପରଂପରାରେ ରାଗିଂ ଓ ସାଂପ୍ରତିକ ଯୁବ ସମାଜ ୧୨୧
ବୋଲବମ୍ ଓ ଯୁବ ସମାଜ ୧୨୫

# ସାହିତ୍ୟ ଓ ଇଲେକ୍ଟ୍ରୋନିକ୍ସ୍ ଗଣମାଧ୍ୟମ

ଯାନ୍ତ୍ରିକ ସମାଜରେ ସାହିତ୍ୟ ପ୍ରତି ଆଉ ଆଦର ନାହିଁ। ଏହାର ସ୍ଥାନ ଇଲେକ୍ଟ୍ରୋନିକ୍ସ୍ ଗଣମାଧ୍ୟମ ଅଧିଗ୍ରହଣ କରିସାରିଲାଣି ବୋଲି ଆପତ୍ତି ଓ ଅଭିଯୋଗମାନ ହେଉଛି । ଏହି ମାଧ୍ୟମ ଦ୍ୱାରା ଅତି ସହଜରେ ଓ ଶସ୍ତାରେ ବ୍ୟକ୍ତିର ମାନସିକ କ୍ଷୁଧା ଚରିତାର୍ଥ ହୋଇଯିବାରୁ ସାହିତ୍ୟ ଆଉ ଗଣରୋଚକ ହୋଇପାରୁ ନାହିଁ । ସାହିତ୍ୟ ପତ୍ରପତ୍ରିକାର ଲୋକପ୍ରିୟତା ହ୍ରାସ ପାଉଛି, ଲୋକେ ପଇସା ଖର୍ଚ୍ଚ କରି ଏଗୁଡିକ କିଣୁନାହାଁନ୍ତି ଇତ୍ୟାଦି । ମୁଖ୍ୟତଃ ଇଲେକ୍ଟ୍ରୋନିକ୍ସ୍ ଗଣମାଧ୍ୟମ ଗୁଡ଼ିକ ଯେ ସାହିତ୍ୟର ଜାତ-ଶତ୍ରୁ ଏମିତି ଏକ ବିଷମଞ୍ଜି ଆମ ଭିତରେ ଦାନା ବାନ୍ଧୁଛି । କିନ୍ତୁ ବାସ୍ତବ ଦୃଷ୍ଟିକୋଣରୁ ବିଚାର କଲେ ଏହି ଏକଦେଶଦର୍ଶୀ ଅଭିଯୋଗର କୌଣସି ଯଥାର୍ଥତା ଥିବା ପରି ମନେ ହୁଏନାହିଁ ।

ଯୁଗେ ଯୁଗେ ସାହିତ୍ୟ ଏକ ସୀମିତ ଗୋଷ୍ଠୀର ବୌଦ୍ଧିକ ବିଳାସ ହୋଇ ରହିଆସିଛି । ସାହିତ୍ୟ ଯେତେବେଳେ ଲୋକମୁଖର ଅଳଙ୍କାର ହୋଇଥିଲା, ଅର୍ଥାତ୍ ଲୋକସାହିତ୍ୟ ପର୍ଯ୍ୟାୟରେ ଥିଲା, ସେ ସମୟରେ ଅଭିଜାତ ଗୋଷ୍ଠୀ ବଦଳରେ ସାଧାରଣ ଜନତାର ଏହା କୋଠ ସମ୍ପତ୍ତି ହୋଇଥିଲା । କିନ୍ତୁ ଯେଉଁ ମୁହୂର୍ତ୍ତରୁ ସାହିତ୍ୟ ଶିଷ୍ଟ ସାହିତ୍ୟର ମାନ୍ୟତା ପାଇଲା ଏହା ଶିଷ୍ଟ ସମାଜର ସୁନା ସିନ୍ଦୁକ ଭିତରେ ରହିଗଲା । ଧୀରେ ଧୀରେ ସମାଜରେ ଏଥିପାଇଁ ବିଧିନିର୍ଦ୍ଦେଶ ସୁଦ୍ଧା ନିର୍ମିତ ହୋଇଗଲା । ବେଦ ଉପନିଷଦ ଆଦି ବୈଦିକ ସାହିତ୍ୟ ତ କେବଳ ବ୍ରାହ୍ମଣର ଗଣ୍ଠିଧନ ହୋଇ ରହିଲା । ଶୁଦ୍ରମାନଙ୍କୁ ବେଦ ଚର୍ଚ୍ଚା ଶୁଣିବାପାଇଁ ସୁଦ୍ଧା ଅନୁମତି ଦିଆଯାଉ ନଥିଲା । ଯଦି କେହି କେବେ ଅକସ୍ମାତ ଏହା ଶୁଣି ଦେଉଥିଲା ତା' କାନରେ ଗରମ ତେଲ ଢଳା ହେଉଥିଲା । ଏପରିକି ମନୁସଂହିତାରେ ନାରୀମାନଙ୍କ ପାଇଁ ସୁଦ୍ଧା ବେଦ ଅଧ୍ୟୟନ ନିଷିଦ୍ଧ ଥିଲା, ଯାହା ବିଂଶ ଶତାବ୍ଦୀର ଶେଷ ପର୍ଯ୍ୟାୟ ପର୍ଯ୍ୟନ୍ତ ବିତର୍କର ବିଷୟ ହୋଇ ରହିଆସିଥିଲା । 'ରାମାୟଣ', 'ମହାଭାରତ' ଓ ପୁରାଣ ଯୁଗରେ ସାହିତ୍ୟର ମାଧ୍ୟମ ଥିଲା ସଂସ୍କୃତ । ଏ ସଂସ୍କୃତ ଭାଷା ବ୍ରାହ୍ମଣଙ୍କ ବ୍ୟତିରେକେ ଅନ୍ୟମାନଙ୍କ ପାଇଁ ନିଷିଦ୍ଧ ଥିଲା । ତେଣୁ କେବଳ ସଂସ୍କୃତ ଭାଷାରେ

..................... .....

ବ୍ୟୁତ୍ପତ୍ତି ଲାଭ କରିଥିବା ପଣ୍ଡିତମାନେ ହିଁ ଥିଲେ ସାହିତ୍ୟର ସ୍ରଷ୍ଟା ଓ ଭୋକ୍ତା ।

ମାତ୍ର ସାହିତ୍ୟର ଇତିହାସରେ ଗୋଟିଏ ସୁବର୍ଣ୍ଣ ଯୁଗ ଆସିଥିଲା ଯେତେବେଳେ ଏହା ଗଣଭାଷାରେ ଗଣ ମାନସକୁ ସ୍ପର୍ଶ କରିଥିଲା । ସାହିତ୍ୟର ଏ ମୁକ୍ତ ବିହାର କେବଳ ଓଡ଼ିଆରେ ନୁହେଁ ଭାରତର ଅନ୍ୟାନ୍ୟ ପ୍ରାନ୍ତୀୟ ଭାଷାରେ ସୁଦ୍ଧା ଅନୁଭୂତ ହୋଇଥିଲା । ଓଡ଼ିଶାରେ ସାରଳା ଦାସ, ଆସାମରେ ଶଙ୍କର ଦେବ ଓ ବଙ୍ଗଳାରେ କୃତିବାସ ଓଝା ଆଦି ଥିଲେ ଏ ସମୟର କ୍ରାନ୍ତିଦର୍ଶୀ ସ୍ରଷ୍ଟା । ବହୁ ସଂଘର୍ଷ ସଂଘାତ ସହ୍ୟ କରି ଏମାନେ ସଂସ୍କୃତ ଭାଷାର ଶୃଙ୍ଖଳରୁ ସାହିତ୍ୟକୁ ମୁକ୍ତି ଦେଇଥିଲେ । ସେହି ହେତୁରୁ ତ ସାରଳା ଦାସଙ୍କୁ 'ଶୁଦ୍ରମୁନି' ଓ ଜଗନ୍ନାଥ ଦାସଙ୍କ ଭାଗବତକୁ ତତ୍କାଳୀନ ସଂସ୍କୃତଜ୍ଞ ବ୍ରାହ୍ମଣମାନେ 'ତେଲି ଭାଗବତ' କହି ଉପହାସ କରୁଥିଲେ । କିନ୍ତୁ ସାହିତ୍ୟର ଏ ସ୍ରୋତ ସମାଜରେ ବେଶୀ ଦିନ ତିଷ୍ଠି ପାରିଲା ନାହିଁ । ସାହିତ୍ୟ ପୁଣି ଗଣ ପାଖରୁ ଦୂରେଇ ଯାଇ ଅଭିଜାତ ହୋଇପଡ଼ିଲା ସଂସ୍କୃତ ଭାଷାର ଏକ ପ୍ରତିଦ୍ୱନ୍ଦ୍ୱୀ ସାହିତ୍ୟ ପ୍ରାନ୍ତୀୟ ଭାଷାରେ ସୃଷ୍ଟି କରିବାର ପ୍ରବଣତା ପରିଲକ୍ଷିତ ହେଲା ।

ଓଡ଼ିଆ ସାହିତ୍ୟର ପଞ୍ଚସଖା ଯୁଗରେ ଜଗନ୍ନାଥ ଦାସଙ୍କ ଭାଗବତ ଓ ବଳରାମ ଦାସଙ୍କ ଜଗମୋହନ ରାମାୟଣ ଭଳି ଆଉ ଖଣ୍ଡେ ଦୁଇଖଣ୍ଡ ପୁସ୍ତକ ଛାଡ଼ି ଦେଲେ ଅନ୍ୟାନ୍ୟ ଯେଉଁ ଗ୍ରନ୍ଥସମୂହ ରହିଛି ସେଗୁଡ଼ିକ ଏପରି ପ୍ରହେଳିକାମୟ ଓ ଦ୍ୱୈତାର୍ଥବୋଧକ ଯେ ସାଧାରଣ ପାଠକ ତାର ଆଦି ଅନ୍ତ ପାଏ ନାହିଁ । କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ତ ସାଧାରଣ ପାଠକ ପାଇଁ ସତକୁ ସତ ସମ୍ରାଟ ହୋଇ ରହିଗଲେ । ଅଭିଧାନ ଟୀକାଟିପ୍ପଣୀ ଓ ଶବ୍ଦକୋଷର ସୋପାନ ପରେ ସୋପାନ ଅତିକ୍ରମ କରି ସାରିବା ପରେ ହିଁ ତାଙ୍କୁ ହୃଦ୍‌ବୋଧ କରିବାର ସୌଭାଗ୍ୟ ମିଳିଥାଏ । ଦୀନକୃଷ୍ଣ ଦାସ, ଅଭିମନ୍ୟୁ ସାମନ୍ତସିଂହାର, ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ଆଦି ଏ ଯୁଗର ସାହିତ୍ୟିକମାନେ ତାଙ୍କ ସାହିତ୍ୟ ରସିକ, ପଣ୍ଡିତ, ଜ୍ଞାନୀ, ବୃଦ୍ଧଜନ, ସୁଧୀଜନମାନଙ୍କ ପାଇଁ ଉଦ୍ଦିଷ୍ଟ ବୋଲି ସଦର୍ପେ ଘୋଷଣା କରିଛନ୍ତି । ରାଜାଙ୍କର ପ୍ରତ୍ୟକ୍ଷ ପୃଷ୍ଠପୋଷକତାରେ ରାଜ ଦରବାର ହିଁ ଥିଲା ସାହିତ୍ୟ ଚର୍ଚ୍ଚାର ଉପଯୁକ୍ତ କ୍ଷେତ୍ର । ଏ ସାହିତ୍ୟକୁ କୁହାଯାଉଥିଲା ଦରବାରୀ ସାହିତ୍ୟ । ଜ୍ଞାନୀଗୁଣୀ ପଣ୍ଡିତମାନେ ଥିଲେ ଏହାର ସ୍ରଷ୍ଟା ଓ ଶ୍ରୋତା । ସାଧାରଣ ଜନତା ଏହାର ଧାର ସୁଦ୍ଧା ଧରୁ ନଥିଲେ ।

ଇଂରେଜୀ ଭାଷା ସାହିତ୍ୟରେ ବ୍ୟୁତ୍ପତ୍ତି ଲାଭ କରିଥିବା ରାଧାନାଥ ରାୟଙ୍କ ଆବିର୍ଭାବ ପରେ ଓଡ଼ିଆ ସାହିତ୍ୟ ଆଧୁନିକ ସାହିତ୍ୟର ପର୍ଯ୍ୟାୟଭୁକ୍ତ ହେଲେ

ସୁଦ୍ଧା ତାଙ୍କ କାବ୍ୟର ବିଷୟବସ୍ତୁ ଭଞ୍ଜୀୟ ଭାବନାଠାରୁ ବେଶୀ ଦୂରବର୍ତ୍ତୀ ନଥିଲା । କିନ୍ତୁ ସାରଳା ଦାସଙ୍କ ଭଳି ଏ ଯୁଗରେ ଆଉ ଜଣେ ଯୋଗଜନ୍ମା ପ୍ରଚଣ୍ଡ ପ୍ରତିଭାଧର ମହା-ମନିଷୀ ଜନ୍ମ ହୋଇଥିଲେ ଯାହାଙ୍କର ସୃଷ୍ଟି ସବୁଶ୍ରେଣୀର ମଣିଷର ହୃଦତନ୍ତ୍ରୀରେ ଗଭୀର କମ୍ପନ ସୃଷ୍ଟି କରିଥିଲା । ସେ ସ୍ରଷ୍ଟା ଜଣକ ହେଉଛନ୍ତି ଫକୀର ମୋହନ ସେନାପତି । ତାଙ୍କ ଲେଖାର ସାର୍ବଜନୀନତା ପ୍ରକାଶ ପାଇଁ ନିମ୍ନୋକ୍ତ ଗୋଟିଏ ଉଦାହରଣ ତାଙ୍କର ସମଗ୍ର ସାହିତ୍ୟକୃତିର ଲୋକପ୍ରିୟତାର ନିଦର୍ଶନ ହେବ । "ଉତ୍କଳ ସାହିତ୍ୟ"ରେ ଧାରାବାହିକ ଭାବେ ପ୍ରକାଶିତ "ଛମାଣ ଆଠଗୁଣ୍ଠ" ର ଖଳନାୟକ ରାମଚନ୍ଦ୍ର ମଙ୍ଗରାଜଙ୍କ ବିଚାର କଟକ ମାଜିଷ୍ଟ୍ରେଟଙ୍କ କୋର୍ଟରେ ହେବାକୁ ଥିବା ତାରିଖ ଅନୁସାରେ ଗାଁରୁ ଲୋକେ ଚୂଡ଼ା ଚାଉଳ ଧରି ଏହି ବିଚାର ରାୟ ଶୁଣିବା ପାଇଁ ସହରକୁ ଆସିଥିଲେ । ସାହିତ୍ୟର ଏ ଗଣଧର୍ମୀତା ପ୍ରକୃତରେ ବିଶ୍ୱ ସାହିତ୍ୟରେ ବିରଳ ।

ଓଡ଼ିଆ ସାହିତ୍ୟ ଇତିହାସର ଏ ପର୍ଯ୍ୟାୟ ଏକାଧିକ ସାହିତ୍ୟକାରଙ୍କ ଦ୍ୱାରା ବିଭିନ୍ନ ବିଭାବରେ ଭାବସମୃଦ୍ଧ ହେଲେ ସୁଦ୍ଧା ସାହିତ୍ୟର ସ୍ରଷ୍ଟା ଓ ଉପଭୋକ୍ତା ଥିଲେ ନବ୍ୟଶିକ୍ଷିତ ଯୁବକ ଯୁବତୀ । ତତ୍‌କାଳୀନ ସମାଜରେ ଅନ୍ୟାନ୍ୟ ନୂତନ ବିଳାସ ସହ ସାହିତ୍ୟ ବିଳାସ ଥିଲା ଆଭିଜାତ୍ୟ ପ୍ରକଟର ଅନ୍ୟତମ ପ୍ରତୀକ । ସମାଜରେ ପ୍ରତିଷ୍ଠିତ ବ୍ୟକ୍ତିମାନେ କିଛି ପରିମାଣରେ ସାହିତ୍ୟ ସେବା ନକଲେ ସତେ ଯେମିତି ତାଙ୍କ ବ୍ୟକ୍ତିତ୍ୱ ଅସଂପୂର୍ଣ୍ଣ ରହିଯାଉଥିଲା । ଏଇଭଳି ଏକ ପ୍ରବଣତା ତତ୍‌କାଳୀନ ସାହିତ୍ୟିକ ବାତାବରଣକୁ ଆଚ୍ଛନ୍ନ କରି ରଖିଥିଲା ।

ସ୍ୱାଧୀନତା ପରବର୍ତ୍ତୀ ଯୁଗରେ ସାହିତ୍ୟକୁ ନେଇ ଅତିଗୁଡ଼ିଏ ପରୀକ୍ଷା ନିରୀକ୍ଷା ସାହିତ୍ୟ ଓ ସାଧାରଣ ଜନତା ଭିତରେ ଏକ ଦୁର୍ବୋଧ୍ୟ ଦୂରତ୍ୱ ସୃଷ୍ଟି କରି ଏହାକୁ ମୁଷ୍ଟିମେୟ ସ୍ରଷ୍ଟାଙ୍କ ଭୋଜବାଜୀ କରି ରଖିଲା । ଉଦ୍ଭଟ ନାଟକ, ଅଣୁଧର୍ମୀ ଗଳ୍ପ, ପ୍ରତୀକ ଓ ଚିତ୍ରକଳ୍ପରେ ଭରପୂର କବିତା ଚେତନା ପ୍ରବାହଧର୍ମୀ ଉପନ୍ୟାସ ଆଦି ଯେତେ ଗଳଦ୍‌ଘର୍ମ ହେଲେ ସୁଦ୍ଧା ଏହା ସାଧାରଣ ପାଠକଙ୍କର ସହଜରେ ବୋଧଗମ୍ୟ ହେଉ ନଥିଲା ।

ସାହିତ୍ୟ ଦୁର୍ବୋଧ୍ୟ ହେଉ କି ସୁବୋଧ୍ୟ ହେଉ ଏହା ସକଳ ବର୍ଗର ମଣିଷଙ୍କ ମନୋରଞ୍ଜନ ସାମଗ୍ରୀ ହୋଇ ନପାରେ । ବ୍ୟକ୍ତି ଗୋଟିଏକୁ ରୁଚି ଗୋଟିଏ । ବୌଦ୍ଧିକ କ୍ଷୁଧା ସମସ୍ତଙ୍କର ଥାଇପାରେ କିନ୍ତୁ ପଠନସ୍ପୃହା ସମସ୍ତଙ୍କର ନଥାଏ । ବୌଦ୍ଧିକ କ୍ଷୁଧାର ପ୍ରଶମନ ପାଇଁ ସାହିତ୍ୟ ବ୍ୟତୀତ ସଂଗୀତ, ନୃତ୍ୟ,

ଚିତ୍ରକଳା, ଭାସ୍କର୍ଯ୍ୟ, ବୈଜ୍ଞାନିକ ଆବିଷ୍କାର ଓ ଉଦ୍ଭାବନ କିମ୍ବା ଐତିହାସିକ ତଥ୍ୟ ଉନ୍ମୋଚନ ଆଦିରେ ନିଜକୁ ନିୟୋଜିତ କରି ସେ ମାନସିକ ଶାନ୍ତି ପାଇଥାଏ । ଯେତେବେଳେ ଇଲେକ୍ଟ୍ରୋନିକ୍ସ ଗଣମାଧ୍ୟମ ନଥିଲା ମନୋରଞ୍ଜନ ପାଇଁ ସାହିତ୍ୟ ପରିବର୍ତ୍ତେ ତାସ, ପଶା, ଗଞ୍ଜପା, ଲଡୁ କଉଡ଼ି ଆଦି ଖେଳରେ କେତେକ ଲୋକ ସମୟ ଅତିବାହିତ କରୁଥିଲେ । ସାହିତ୍ୟ ସଭାମାନଙ୍କରେ ସର୍ବଦା ଶ୍ରୋତା ସୀମିତ ଥାନ୍ତି । କବିତା ଆସରରେ ଆମ ନିଜ କବିତାଟି ପଢ଼ିସାରିଲେ ଅନ୍ୟ କବିଙ୍କର କବିତା ଶୁଣିବାର ସୌଜନ୍ୟବୋଧ ଟିକକ ଆମର ରହେ ନାହିଁ । ଅଥଚ ରାଜନୀତି କିମ୍ବା ଅନ୍ୟାନ୍ୟ ସଭାସମିତି ହେଲେ ଜନତାର ଭିଡ଼ ଜମେ ।

ଏ କ୍ଷେତ୍ରରେ ଆମେ କେମିତି କହିବା ଇଲୋକ୍ଟ୍ରୋନିକ୍ସ ଗଣମାଧ୍ୟମ ସାହିତ୍ୟର ଶତ୍ରୁ ବୋଲି ? ବରଂ ସାହିତ୍ୟକୁ ଲୋକାଭିମୁଖୀ କରିବାପାଇଁ କେତେକ କ୍ଷେତ୍ରରେ ଏହା ସହାୟକ ହୋଇଥାଏ । ପ୍ରତିଷ୍ଠିତ ସାହିତ୍ୟିକମାନଙ୍କ ସହ ସାକ୍ଷାତକାର, ପୁସ୍ତକ ସମୀକ୍ଷା, କବିତା ସମ୍ମିଳନୀ, ସାହିତ୍ୟ ଚର୍ଚ୍ଚା ଆଦି କାର୍ଯ୍ୟକ୍ରମ ମାଧ୍ୟମରେ ଏହା ସାହିତ୍ୟକୁ ଜନତା ପାଖରେ ପହଞ୍ଚାଇବାରେ ସାହାଯ୍ୟ କରେ । ଟେଲିଫିଲ୍ମ, ସଂପୂର୍ଣ୍ଣ ଫିଲ୍ମ ଓ ଟି.ଭି. ଧାରାବାହିକମାନଙ୍କରେ ବଡ଼ ବଡ଼ ଲେଖକମାନଙ୍କ ବାର୍ତ୍ତା ପ୍ରଚାର ଓ ପ୍ରସାର ହୋଇଥାଏ ।

ସାହିତ୍ୟ ପ୍ରତି ଲୋକପ୍ରିୟତା ହ୍ରାସ ପାଉଛି ବୋଲି ଯେଉଁ ଆଶଙ୍କା ପ୍ରକଟିତ ହେଉଛି ତାହା ତଥ୍ୟ ସମର୍ଥିତ ନୁହେଁ । ସାହିତ୍ୟ ତା'ସ୍ଥାନରେ ସମୃଦ୍ଧ, ଗଣମାଧ୍ୟମ ତା' ସ୍ଥାନରେ ଲୋକପ୍ରିୟ । ବରଂ ଆଗ ଅପେକ୍ଷା ଏବେ ସାହିତ୍ୟର ଚର୍ଚ୍ଚା ଅଧିକ ହେଉଛି । ଗାଁ ଗାଁରେ ସାହିତ୍ୟ ଅନୁଷ୍ଠାନ ଗଢ଼ିଉଠିଛି। ଶହ ଶହ ସଂଖ୍ୟାରେ ବହି ଛପା ହେଉଛି । ସବୁ ବର୍ଗର ପାଠକଙ୍କ ପାଇଁ ଭିନ୍ନ ଭିନ୍ନ ରୁଚିର ସାହିତ୍ୟ ପ୍ରତିକା ପ୍ରକାଶ ପାଉଛି । ଏ ସବୁ ତା' ହେଲେ କାହାପାଇଁ ? ସମ୍ବାଦପତ୍ରମାନଙ୍କରେ ସାହିତ୍ୟ ପରିବେଷଣକୁ ଏକ ପ୍ରମୁଖ ଭୂମିକା ଦିଆଯାଇଛି । ରାଜଧାନୀ ପୁସ୍ତକ ମେଳା ହେଉ କି ଅନ୍ୟ ସହରମାନଙ୍କର ପୁସ୍ତକ ମେଳା ହେଉ, ଏଠାରେ ଯେଉଁ ବିଶାଳ ଜନସମାବେଶ ପରିଲକ୍ଷିତ ହୁଏ, ତା'ପରେ କିଏ କହିବ ସମାଜରୁ ସାହିତ୍ୟ ପ୍ରତି ଆଦର କମି କମି ଆସୁଛି ?

ସାହିତ୍ୟ ବଞ୍ଚିଛି, ବଞ୍ଚିବ ସେ ଅବିନାଶୀ । ପୂର୍ବରୁ ସମାଜରେ ତାର ଯେଉଁଭଳି ସ୍ଥିତି ଥିଲା ଏବେ ତା'ଠାରୁ କୌଣସି ଗୁଣରେ କମ୍‌ରେ ନାହିଁ। ବରଂ ଆହୁରି ଋଦ୍ଧିମନ୍ତ ହୋଇଛି । ସେ ଅଜାତଶତ୍ରୁ । କୌଣସି ମାଧ୍ୟମ ତାର ବିକଳ୍ପ

ହୋଇନପାରେ । ସମାଜର ବହୁ ବର୍ଗର ଲୋକଙ୍କୁ ଏହା ସହ ସଂପୃକ୍ତି କରିବାର ପ୍ରଚେଷ୍ଟ କେବେ ସମ୍ଭବ ନଥିଲା । ଏବେ ବି ସମ୍ଭବ ନୁହେଁ । ସାହିତ୍ୟ ପ୍ରତି ଯେଉଁମାନଙ୍କର ଅନୁରକ୍ତି ରହିଛି ଯେକୌଣସି ପ୍ରତିକୂଳ ପରିସ୍ଥିତିରେ ବି ସେମାନେ ସାହିତ୍ୟ ପଢ଼ିବେ, ଅନ୍ୟଥା ନୁହେଁ । ତେଣୁ ଅଯଥା ଏକ କାଳ୍ପନିକ ସଙ୍କଟର ଆଶଙ୍କା ପ୍ରକଟିତ କରି ଏହାଂର ବିସ୍ତୃତ ସମ୍ଭାବନାକୁ ସୀମିତ କରିବା ବିଜ୍ଞତାର ପରିଚାୟକ ନୁହେଁ ।

ଅନୁପମ ଭାରତ

୧ ଜୁନ୍, ୨୦୦୪

# ଶିଶୁର ବ୍ୟକ୍ତିତ୍ୱ ବିକାଶ ପାଇଁ ନାନାବାୟା ଗୀତ

ସଂଗୀତର ଗୋଟିଏ ଚିରନ୍ତନ ଆବେଦନ ରହିଛି । ପ୍ରାଣୀଜଗତ ସହିତ ସଂଗୀତର ସମ୍ପର୍କ ଅତି ପ୍ରାଚୀନ । ସଂଗୀତର ମଧୁ ଝଙ୍କାରରେ ସର୍ପଭଳି ହିଂସ୍ର ଜନ୍ତୁ ମଧ୍ୟ ନିଜର ହିଂସ୍ରତା ଭୁଲି ବାଧ୍ୟ ଜୀବଟିଏ ହୋଇପଡ଼େ । ବନ୍ୟଜନ୍ତୁମାନେ ସଂଗୀତର ଆବେଶରେ ପୋଷ୍ୟ ହୋଇଯିବାର ଅନେକ ଦୃଷ୍ଟାନ୍ତ ରହିଛି । କେବଳ ପ୍ରାଣୀ ଜଗତ ନୁହେଁ, ଉଦ୍ଭିଦ ଜଗତ ଉପରେ ମଧ୍ୟ ସଂଗୀତର ଏ ସମ୍ମୋହନୀ ପ୍ରଭାବ କଥା ଶୁଣିଲେ ଆଶ୍ଚର୍ଯ୍ୟ ଲାଗେ । ସଂପ୍ରତି କେରଳର ଏକ ନଡ଼ିଆ ବଗିଚାରେ ଯନ୍ତ୍ର ସାହାଯ୍ୟରେ ସଂଗୀତ ଖଞ୍ଜାଯାଇ ନିର୍ଦ୍ଧାରିତ ସମୟର ଯଥେଷ୍ଟ ପୂର୍ବରୁ ଗଛ ଗୁଡ଼ିକୁ ଫୁଲଫଳ ସୁଶୋଭିତ କରାଯିବାର ପରିଲକ୍ଷିତ ହୋଇଛି । ଶାସ୍ତ୍ରୀୟ ସଂଗୀତର ପ୍ରତିଷ୍ଠିତା କଣ୍ଠଶିଳ୍ପୀ ସୁନନ୍ଦା ପଟ୍ଟନାୟକଙ୍କ କଲିକତାସ୍ଥ ବାସଭବନକୁ ଲାଗିଥିବା ଗଙ୍ଗଶିଉଳି ଗଛଟିର ଶାଖାପ୍ରଶାଖା ତାଙ୍କ ସଂଗୀତରେ ଆକୃଷ୍ଟ ହୋଇ ଝରକା ପାଖକୁ ଝୁଙ୍କି ଆସନ୍ତି ବୋଲି ସେ ସ୍ୱୀକାର କରନ୍ତି । ଏ ପ୍ରସଙ୍ଗରେ ମାନବ ଶିଶୁର ବିକାଶ ପାଇଁ ସଂଗୀତର ଯେ ସର୍ବମୟ ପ୍ରଭାବ ରହିଛି ଏଥିରେ ଦ୍ୱିମତର ଅବକାଶ ନାହିଁ । ଶିଶୁପାଇଁ ଉଦ୍ଦିଷ୍ଟ ସଂଗୀତକୁ ସାଧାରଣତଃ ଆମେ ନାନାବାୟା ଗୀତ ବୋଲି କହୁ । ଏ ଗୀତ ଗୁଡ଼ିକ ଉଭୟ ଅର୍ଥପୂର୍ଣ୍ଣ ଓ ଅର୍ଥହୀନ ପରିଲକ୍ଷିତ ହୁଏ । ଚପଳମତି କୋମଳ ଶିଶୁଟି ପ୍ରତି ମାତୃତ୍ୱର ସ୍ୱତଃସ୍ଫୁର୍ତ୍ତ ଅଭିବ୍ୟକ୍ତି ହିଁ ନାନାବାୟା ଗୀତ । ଏହା ସ୍ୱୟଂସୃଷ୍ଟ । ଏଥିପାଇଁ ଉଦ୍ୟମ ନଥାଏ । ପଦସଂଯୋଜନା ପାଇଁ କଠିନ ପ୍ରୟାସ ନଥାଏ, ମାତୃବତ୍ସଳତାର ସ୍ୱଭାବସୁଲଭ ଆବେଗ ଆପେ ଆପେ କବିତାର ରୂପ ନେଇ ଆତ୍ମପ୍ରକାଶ କରେ ।

ସମଗ୍ର ବିଶ୍ୱସାହିତ୍ୟରେ ନାନାବାୟା ଗୀତ ଏକ ଅନୁପମ ବିଭବ । ଇଂରେଜ ସାହିତ୍ୟରେ ଏହାକୁ ନନ୍‌ସେନ୍‌ସ୍ ପୋଏଟ୍ରୀ, କିମ୍ବା ନର୍ସରୀ ରାଇମ୍ ବୋଲି କହନ୍ତି । ହିନ୍ଦୀରେ ଏ ଗୀତକୁ ଲୋରୀ ଓ ବଙ୍ଗଳାରେ ଏହାକୁ 'ଛେଲେ ଭୁଲା ନୋ ଛଡ଼ା' ବୋଲି କହନ୍ତି । ଓଡ଼ିଆରେ ଏହାର କୌଣସି ନିର୍ଦ୍ଦିଷ୍ଟ ସଂଜ୍ଞା ନଥିଲା । ପଲ୍ଲୀକବି ନନ୍ଦକିଶୋର ବଳ ପ୍ରଥମ କରିଇ ଲୋକ ସାହିତ୍ୟର ଏ ବିଭବକୁ ସଂକଳନ କରି

ଏହାର ନାମ "ନାନାବାୟା' ଗୀତ ବୋଲି ପ୍ରଦାନ କଲେ। ନାନାବାୟା ଗୀତର ସୃଷ୍ଟି ସର୍ଜନା ସଂପର୍କରେ ଚିନ୍ତା କଲେ ଜଣାଯାଏ ନାରୀମାନେ ହିଁ ଏ ଗୀତର ସ୍ରଷ୍ଟା। ଶିଶୁର ଲାଳନପାଳନ ଓ ତାହାର ଶୈଶବ କାଳୀନ ନାନାବିଧ ପ୍ରକ୍ରିୟା ସହ ମା ଯେହେତୁ ଅଙ୍ଗାଙ୍ଗୀ ଭାବେ ଜଡିତ, ଶିଶୁଟିର ସହଜ ସ୍ୱଚ୍ଛନ୍ଦ ବିକାଶ ପାଇଁ ଉଦ୍ଦିଷ୍ଟ କବିତା ଗୁଡିକ ନାରୀ ମୁଖରୁ ନର୍ଗତ ହେବା ସ୍ୱତଃସିଦ୍ଧ।

ଶିଶୁପାଇଁ ନାନାବାୟା ଗୀତର ଯଥେଷ୍ଟ ଆବଶ୍ୟକତା ରହିଛି। କଥାର ଅର୍ଥ ବୁଝୁନଥିବା ଓ କହିପାରୁନଥିବା ଅଝଟ କ୍ରନ୍ଦନ ରତ ଶିଶୁକୁ ଶୁଆଇ ଦେବାପାଇଁ ମାଆର ଅମୃତ ବୋଲା କଣ୍ଠରୁ ଝରି ଆସୁଥିବା "ଧୋରେ ବାୟା ଧୋ, ଯେଉଁ କିଆରୀରେ ଗହଳ ମାଣ୍ଡିଆ ସେଇ କିଆରିରେ ଶୋ" ଗୀତଟି ତା ପାଇଁ ଅବ୍ୟର୍ଥ ମନ୍ତ୍ରଭଳି କାମ କରେ। ଶିଶୁ ଜୀବନର ପ୍ରଥମ ପାଞ୍ଚବର୍ଷ ତା ବ୍ୟକ୍ତିତ୍ୱ ଗଠନ ପାଇଁ ଏକ ମହତ୍ତ୍ୱପୂର୍ଣ୍ଣ ସମୟ। ଏହି ସମୟ ଭିତରେ ସେ ଯେଉଁ ଶିକ୍ଷା ଓ ସଂସ୍କାର ଗ୍ରହଣ କରିଥାଏ। ତାହା ତାର ସମଗ୍ର ଜୀବନକାଳକୁ ଅନୁପ୍ରେରିତ କରେ। ତା'ର ସ୍ମରଣଶକ୍ତିର କସରତ ପାଇଁ ନାନାବାୟା ଗୀତର ଭୂମିକା ଯଥେଷ୍ଟ ଗୁରୁତ୍ୱପୂର୍ଣ୍ଣ। ମା ମୁହଁର ନାନାବାୟା ଗୀତକୁ ଶିଶୁ ତାର ଦରୋଟି ଭାଷାରେ ଗାଇବାର ପ୍ରଚେଷ୍ଟା କରି ବୟସ୍କମାନଙ୍କର ମନୋରଞ୍ଜନ କରିବା ସଙ୍ଗେ ସଙ୍ଗେ ନିଜ ସ୍ମରଣ ଶକ୍ତିର ପ୍ରଖରତା ବୃଦ୍ଧି କରେ। ଶୈଶବରୁ ନାନାବାୟା ଗୀତ ମାଧ୍ୟମରେ ସେ ବିଭିନ୍ନ ନୂଆ ନୂଆ ଶବ୍ଦ ସହ ପରିଚିତ ହୁଏ। ବିଭିନ୍ନ ନୂଆ ଗୀତର ଶ୍ରବଣ ଓ ଆବୃତ୍ତି କରିବା ଦ୍ୱାରା ତାର ଉଚ୍ଚାରଣ ସ୍ପଷ୍ଟହୁଏ। ଫଳରେ ପରବର୍ତ୍ତୀ କାଳରେ ଉଚ୍ଚାରଣ ଗତ ତ୍ରୁଟି ହେତୁ ତାକୁ ସଂକୁଚିତ ହେବାକୁ ପଡ଼େ ନାହିଁ। ଆଜିର ସମାଜ ଆମର ପାରମ୍ପରିକ ସଂସ୍କୃତି ଠାରୁ ବିଚ୍ୟୁତ ହୋଇ ପଡ଼ୁଛି। ସଭ୍ୟତା ଓ ସଂସ୍କୃତି ନାମରେ ଆମେ କେତେକ ଅପସଂସ୍କୃତିକୁ ଆପଣେଇ, ଆମ ନିଜସ୍ୱ ସଂସ୍କୃତିକୁ ଉପେକ୍ଷା କରୁଛୁ। ସଭ୍ୟତାର ଇତିହାସରେ ଏହା ଆଦୌ ଶୁଭ ଲକ୍ଷଣ ନୁହେଁ। ନାନାବାୟା ଗୀତ ଶିଶୁକୁ ସଂସ୍କୃତି ସଚେତନ କରାଏ। ଏହା ବ୍ୟତୀତ ଶିଶୁକୁ ସଂଗୀତ ପ୍ରତି ଆକୃଷ୍ଟ କରିବା ସଙ୍ଗେ ସଙ୍ଗେ ତାର ଲୁକ୍କାୟିତ ପ୍ରତିଭା ସନ୍ଧାନ କରିବା ଦିଗରେ ନାନାବାୟା ଗୀତ ପ୍ରମୁଖ ଭୂମିକା ଗ୍ରହଣ କରେ, ଓଡ଼ିଆ ଭାଷାରେ ପ୍ରଚଳିତ କେତେଗୁଡ଼ିଏ ନାନାବାୟା ଗୀତ ତାର ଉପଯୋଗିତା ଓ ପ୍ରାସଙ୍ଗିକତା ଭିତ୍ତିରେ ପ୍ରଦତ୍ତ ହେଲା -

ଅଝଟ ଶିଶୁକୁ ଶୁଆଇବା ପାଇଁ ଓ ଶୋଇଥିବା ଶିଶୁକୁ ଉଠାଇବା ପାଇଁ ମା'ମାନେ ଏକ ସାଂଗୀତିକ ପରିବେଶ ସୃଷ୍ଟିକରି ଗାଇଥାନ୍ତି -

ଧୋରେ ବାଇୟା ଧୋ'
ଯେଉଁ କିଆରୀରେ ଗହଳ ମାଣ୍ଡିଆ

.........................................

ସେହି କିଆରୀରେ ଶୋ।

X X X

"ଉଠ ଧନମଣି ପାହିଲା ରାତି
ରାବିଲେଣି କାକ କଜଳପାତି।"

ଶିଶୁର ଶାରୀରିକ ପରିପୁଷ୍ଟିପାଇଁ ବ୍ୟାୟାମର ଯଥେଷ୍ଟ ଆବଶ୍ୟକତା ରହିଛି। ମାଆ ଶିଶୁ ଶରୀରକୁ ବିଭିନ୍ନ ପ୍ରକାର ସଂଚାଳନ କରି ଗୀତ ଗାଏ -

ଝୁଲ୍‌ରେ ହାତୀ ଝୁଲ୍
ବା ପାଣି ଖାଇ ଫୁଲ୍।
ହାତୀ ଝୁଲୁଥାଏ ରାଜା ବଗିଚାରେ
କିଆ କନ୍ଦା ଖାଇବାକୁ
ମୋ କାହ୍ନୁ ଝୁଲୁଛି ମାଆଙ୍କ କୋଳରେ
କ୍ଷୀର ଟିକେ ଖାଇବାକୁ।
କାଉ କେମିତି ବେଙ୍ଗ ଖାଏ
ଗୋଡ଼ ଦୁଇଟା ହଲଉଥାଏ।

X X X

ଚକା ଭଉଁରୀ ଖେଳୁ ଖେଳୁ ଶିଶୁ ଗୀତଗାଏ -

ଚକା ଚକା ଭଉଁରୀ ମାମୁଁଘର ଚଉଁରୀ
ମାମୁଁ ମତେ ମାଇଲେ
କେତେ କଥା କହିଲେ
ମାଇଁ ମୋତେ ବୁଝେଇ ସୁଝେଇ
କ୍ଷୀର ଭାତ ଖୋଇଲେ।

ଶାରୀରିକ ସୌଷ୍ଟବ ପାଇଁ ଝିଅମାନଙ୍କ ଉଦ୍ଦେଶ୍ୟରେ କେତେକ ସ୍ୱତନ୍ତ୍ର ଖେଳ କସରତ ରହିଛି। ପୁଚି ଖେଳ ସେଗୁଡ଼ିକ ମଧ୍ୟରୁ ମୁଖ୍ୟ। ପୁଚି ଖେଳୁ ଖେଳୁ ଝିଅମାନେ ସାଙ୍ଗମାନଙ୍କ ଗହଣରେ ଗାଆନ୍ତି -

ଠିଆପୁଚି ନାରଙ୍ଗ,
ଗୋଡ଼ଦୁଇଟା ସାରଙ୍ଗ
ସାରଙ୍ଗ ବାଡ଼ିକି ଯାଇଥିଲି,
ସାରଙ୍ଗ ଶୁଖୁଆ ଆଣିଥିଲି
ଅଧେ କଲି କଞ୍ଚା,

ଅଧେ କଲି ଭଜା
ତୋ ଭଉଣୀ ରାଣୀ ଲୋ
ମୋ ଭାଇଟି ରଜା ।

ପ୍ରକୃତିକୁ ଲକ୍ଷ୍ୟ କରି ଅବୁଝା ପୁଅକୁ ବୁଝେଇ ମାଆ ଗୀତଗାଏ -

ଆଜହ୍ନ ମାମୁଁ ଶରଦ ଶଶୀ
ମୋ କାହ୍ନୁ ହାତରେ ପଡ଼ରେ ଖସି
ଆକାଶରୁ ଆସି ମର୍ତ୍ତ୍ୟରେ ରହ
ତୋତେ ଦେଖିକରି ଖେଳିବ ପୁଅ ।

ଋତୁ ସମ୍ବନ୍ଧୀୟ ଗୀତ -

ମେଘ ବରଷିଲା ଟପର ଟପର
କେଶୁର ମାଇଲା ଗଜା
କେଉଁ ରାଇଜରେ ରହିଲେ ମୋ ରଜା
ତେଲିଙ୍ଗି ବାଇଦ ବଜା
X X X
ବେଙ୍ଗ ମୁଣ୍ଡରେ ସିନ୍ଦୁର
ଗାଳିପକା ଇନ୍ଦର ।

ପଶୁପକ୍ଷୀ ସମ୍ବନ୍ଧୀୟ ଗୀତ -

ଉଡ଼ିଗଲେ ଗେଣ୍ଡାଳିଆ
ଝାଡ଼ିଦେଲେ ପର
ଜେମା ନାନୀ କାନ୍ଦୁ ଅଛି
ଦେଖି ବୁଢ଼ାବର ।
X X X

ଡାମରା କାଉରେ ଡାମରା କାଉ
ଦୂର ପରବତେ ବୋବାଉ ଥାଉ ।

ଅଲିଅଳି ଝିଅର ସମୃଦ୍ଧି ଶାଳୀ ଭବିଷ୍ୟତ କାମନା କରି ମାଆ ଗାଏ -

କୁନି ଶାଶୁଘର ଆଳି
କୁତ ଭାତ ଖାଉନାହିଁ ରୂପା ଥାଳି (ରେ)
ବାପାଙ୍କ ପାଖକୁ କହିପଠାଇଛି
...............................................

ଆଣିଦେବେ ସୁନାଥାଳୀ।

ଝିଅର ଦୁଷ୍ଟା ଶାଶୁକୁ ଅଭିସମ୍ପାତ କରି ମାଆ ଗାଏ -

କୁନି ଶାଶୁଘର କାଠିଆ ପଡ଼ା
କାଠ ବୋହି ବୋହି ମୁଣ୍ଡ ଟାଙ୍ଗରା
କାହିଁକି କୁକୁର ବୋବଉଛୁ
କୁନି ଶାଶୁ ମୁଣ୍ଡ ଚୋବଉଛୁ।

ସନ୍ତାନର ଭଲଗୁଣ ଦେଖିଲେ ମାଆ ଉତ୍ସାହିତ କରି ଗୀତଗାଏ -

ମୋ ଧନ ପରି କିଏ ହେବ
ଉଡ଼ି ଯାଉଥିବା ସୁବର୍ଣ୍ଣ ଚଢ଼େଇ
ଧରିଆଣି କିଏ ଦବ।

ଆଜି ଉଚ୍ଚଶିକ୍ଷିତା ମାଆ ଓଡ଼ିଆ ସାରସ୍ୱତ ଭଣ୍ଡାରର ଏ ଅନୁପମ ବିଭବକୁ ଅବହେଳା ପ୍ରଦର୍ଶନ କରୁଛନ୍ତି। ଫଳତଃ ନାନାବାୟ୍ଧ ଗୀତର ଶିଶୁ ଉପରେ ଯେଉଁ ଚିରନ୍ତନୀ ପ୍ରଭାବ ରହିଛି ସେଥିରୁ ସେ ବଞ୍ଚିତ ହେବା ସଙ୍ଗେ ସଙ୍ଗେ, ଆପଣାର ସଂସ୍କୃତି ଓ ପରମ୍ପରାଠାରୁ ଦୂରେଇ ଯାଉଛି। ତେଣୁ ଏକ ସୁସ୍ଥ ସୁନ୍ଦର ସଂସ୍କୃତି ଭିତ୍ତିକ ସମାଜ ଗଠନ ପାଇଁ ନାନାବାୟ୍ଧ ଗୀତର ଅବଦାନକୁ ଅସ୍ୱୀକାର କରାଯାଇ ନପାରେ।

ସଭ୍ୟତା ଜଗତୀକରଣ ହେବା ଫଳରେ ଆମ ପିଲାମାନଙ୍କର ଅବଗାହନ ପରିସର ଆଉ ଆମ ବାଡ଼ି ଟୁବ ଗଡ଼ିଆ ନୁହେଁ, ଭାରତ ମହାସାଗରର ସୀମା ଅତିକ୍ରମ କରି ସେମାନେ ପ୍ରାଶାନ୍ତ ମହାସାଗରରେ ସ୍ନାନ ସନ୍ତରଣ କଲେଣି ଓ କରିବା ଉଚିତ। ତଥାପି ଆବେଗ, ଆକର୍ଷଣ ଓ ପ୍ରାଥମିକ ପ୍ରେରଣାର ଉତ୍ସ ଟୁବ ଗଡ଼ିଆକୁ ସମ୍ପୂର୍ଣ୍ଣ ଅସ୍ୱୀକାର କରିବା କସ୍ମିନ କାଳେ ସୁସ୍ଥ ସମାଜର ଲକ୍ଷଣ ନୁହେଁ। ସେଥିପାଇଁ ଆମର ନୂତନ ଦାୟାଦମାନଙ୍କୁ ଆମ ସଂସ୍କୃତି ପ୍ରତି ସଚେତନ କରାଇବା ପ୍ରତ୍ୟେକ ନାଗରିକର ନୈତିକ ଦାୟିତ୍ୱ। 'ଟ୍ୱିଙ୍କଲ୍ ଟୁଇଁକଲ୍ ଲିଟିଲ୍ ଷ୍ଟାର୍'' ସହ ସମତାଳରେ ଆ ଜହ୍ନମାମୁଁ ଶରଦ ଶଶୀର ଝଙ୍କାରରେ ହିଁ ସଭ୍ୟତା ଜଗତୀକରଣ ହେଲା ବୋଲି ଆମେ ଅନୁଭବ କରିବା। ତା ନହେଲେ ସବୁ ସଭ୍ୟତା ପ୍ରଗତି ଯେ ଏକ ପାଖିଆ ଖାପଛଡ଼ା ଛିନ୍ନମୂଳ ହୋଇପଡ଼ିବ। ଆପଣାର ଆତ୍ମ ପରିଚୟ ହରେଇବ ଏଥିରେ ଦ୍ୱିମତର ଅବକାଶ ନାହିଁ।

ସମାଜ, ୧୩ ଜୁଲାଇ, ୨୦୦୩

# ନିରବତାର ଭାଷା

ଭାଷା ଭାବ ପ୍ରକାଶ ମାଧ୍ୟମ। କିନ୍ତୁ ସବୁ ପ୍ରକାର ଭାବକୁ ଭାଷା ପ୍ରକାଶ କରିପାରେ ନାହିଁ। ଏମିତି ଅନେକ ଭାବ ଅଛି, ଏମିତି ଅନେକ ଅନୁଭବ ଅଛି, ଯାହାକୁ ପ୍ରକାଶ କରିବାକୁ ଅନୁଭବୀ ମଣିଷ ପାଖରେ ଭାଷା ନଥାଏ। ସେଥିପାଇଁ ଅଧିକ ଭାବପ୍ରବଣ ହୋଇ ପଡ଼ିଲେ ଆମେ ସେହି ଭାବାବେଗକୁ ପ୍ରକାଶ କରିବାକୁ ଯାଇ କହୁ - 'ଏହା ପ୍ରକାଶ କରିବାକୁ ମୋ ପାଖରେ ଭାଷାନାହିଁ, କିମ୍ବା ଭାଷାରେ ଏହା ପ୍ରକାଶ କରାଯାଇପାରିବ ନାହିଁ, ଏହା କେବଳ ନିରୋଳ ଉପଲବ୍ଧିର କଥା' ... ଇତ୍ୟାଦି। ଆମର ଅନେକ କହିବାର କଥାକୁ ଭାଷା ସଂଗୋପିତ କରିଦିଏ। ଅନୁଭବର ତୀବ୍ରତାକୁ ପ୍ରକାଶ କରିବା ପାଇଁ ସର୍ବଦା ଶବ୍ଦର ସାମର୍ଥ୍ୟ ନଥାଏ। ଏତ ଗଲା ଗୋଟିଏ କଥା, ଅନ୍ୟ ଦୃଷ୍ଟିରେ ଚିନ୍ତା କଲେ ନିଜର ପ୍ରତିକ୍ରିୟା ପ୍ରଦର୍ଶନ ପାଇଁ ଶବ୍ଦର ଅଭାବ ନଥିଲେ ସୁଦ୍ଧା ବେଳେବେଳେ ଇଚ୍ଛାକୃତ ନିରବତା ଅନେକ ସମସ୍ୟାର ସମାଧାନ କରିଦିଏ। ଯାହା ଶବ୍ଦରେ ହୁଏନାହିଁ ତାହା ନିଃଶବ୍ଦରେ ହୋଇଯାଏ।

ସମ୍ମୁଖ ସଂଗ୍ରାମ ଅପେକ୍ଷା ନିରବ ବିଦ୍ରୋହ ଶତଗୁଣ ବଳି ତୀବ୍ର। ସଂଗ୍ରାମ ଯଦି ବିପକ୍ଷର ଶରୀରକୁ କ୍ଷତ ବିକ୍ଷତ କରେ ନିରବ ବିଦ୍ରୋହ ବିପକ୍ଷର ସ୍ଥୂଳ ଶରୀରକୁ ଅକ୍ଷତ ରଖି ତୀର ଭଳି ଭେଦିଯାଏ ସୂକ୍ଷ୍ମ ଶରୀରକୁ... ହୃଦୟର ଶେଷ ତନ୍ତ୍ରୀ ପର୍ଯ୍ୟନ୍ତ, ଯହିଁରେ ଜ୍ୱଳନର ତୀବ୍ରତା ହିଁ ଅନୁଭବ କରିହୁଏ। ଯେତେବଡ଼ ପରାକ୍ରମୀ ବୀର ହେଲେ ସୁଦ୍ଧା ଏ ବର୍ଚ୍ଛାର ତୀବ୍ରତା ସେ ସହ୍ୟ କରିପାରେ ନାହିଁ। ନିଜ କୃତକର୍ମ ପାଇଁ ଅନୁତାପ ଓ ପଶ୍ଚାତାପର ନିଆଁରେ ଜଳି ଜଳି ଶେଷକୁ ନିଃଶେଷ ହୋଇଯାଏ। କେବଳ ଜଳିବାହିଁ ତା' ପାଇଁ ହୋଇଉଠେ ଏକ ନିଷ୍ଠୁର ସତ୍ୟ। ନିରବ ବିଦ୍ରୋହ ବଳରେ ବିଶ୍ୱ ଇତିହାସରେ ଏମିତି କେତେ କ'ଣ ନାହିଁ ନଥିବା ପରିବର୍ତ୍ତନ ମଧ୍ୟ ହୋଇଛି।

ଆପଣାର ଲୋକମାନଙ୍କର ଭୁଲ୍ ବୁଝାମଣା ପାଇଁ ନିରବତା ଏକ ଅବ୍ୟର୍ଥ

ଅସ୍ତ୍ର। ପାରିବାରିକ କଳହ, ମନାନ୍ତର ଅଶାନ୍ତ ପରିବେଶରୁ ମୁକ୍ତ ରହିବାର ଚାବି କାଠି ହେଲା ନିରବ ଅଭିମାନ। ଯୁକ୍ତ ତର୍କ ବାକ୍ ବିତଣ୍ଡାରେ ଯାହା ହାସଲ କରିହୁଏ ନାହିଁ, ମାନ ଅଭିମାନରେ ତାଠାରୁ ଢ଼େର କିଛି ହାସଲ କରାଯାଏ। ତର୍କବିତର୍କ ଦ୍ୱାରା ପରିବେଶ ବିଶୃଙ୍ଖଳିତ ହୋଇଯାଏ। ସମ୍ପର୍କର ରଜ୍ଜୁ ଶିଥିଳ ହୋଇପଡ଼େ। କିନ୍ତୁ ନିରବ ଅଭିମାନ ସମ୍ପର୍କକୁ ଆହୁରି ଭାବପ୍ରବଣ କରିଦିଏ। ପରିବେଶକୁ ଆତ୍ମୀୟତା ଓ ଅନ୍ତରଙ୍ଗତାର ନୂତନ ଛନ୍ଦରେ ଛନ୍ଦାୟିତ କରିଦିଏ। ମାତ୍ର ତର୍କବିତର୍କରୁ କ୍ରୋଧ ସୃଷ୍ଟି ହୁଏ। କ୍ରୋଧରୁ ହୁଏ ସର୍ବନାଶ।

ଅଝଟ ଶିଶୁଟିକୁ ବୁଝାଇବା ପାଇଁ ମାଡ଼ଗାଳି, ଧମକ ଚମକ ଯାହା ନ କରିପାରେ, ମାଆର କୃତ୍ରିମ ଅଭିମାନ ତାହା ସହଜରେ କରିପାରେ। ଠିକ୍ ସେମିତି ଉଦଣ୍ଡ ଉଚ୍ଛୃଙ୍ଖଳିତ କିଶୋର କିମ୍ବା ଯୁବ ସମାଜକୁ ସୁଧାରିବା ପାଇଁ ଅନୁଶାସନ ଓ ଶାସ୍ତି ଅପେକ୍ଷା ପିତାମାତାଙ୍କର ସ୍ନେହ ମମତା ସିକ୍ତ ନିରବ ଅଭିମାନ ଅନେକାଂଶରେ ସମସ୍ୟାକୁ ସମାଧାନ କରିଥାଏ। ଅତ୍ୟାଚାରୀ ମଦ୍ୟପ ସ୍ୱାମୀ ହେଉ କି ମୁଖରା ସ୍ତ୍ରୀ ହେଉ ପରସ୍ପର ପରସ୍ପରର ଛିଦ୍ରଖୋଜା ଖୋଜିରେ ଲିପ୍ତ ନ ରହି ଏକ ଅପର ପ୍ରତି ଅସହଯୋଗ ପ୍ରଦର୍ଶନ ପୂର୍ବକ ନିରବତା ଅବଲମ୍ବନ କଲେ ପରିବାରରେ ଶାନ୍ତି ବିରାଜମାନ ହୁଏ। ପ୍ରତି ମୁହୂର୍ତ୍ତରେ ସମ୍ପର୍କ ମଧୁର-ମାଦକତାରେ ଭରିଯାଏ।

କୌଣସି ଅନ୍ୟାୟ, ଅନୀତି ଓ ଅତ୍ୟାଚାର ପ୍ରତି ନୀରବତା ଅବଲମ୍ବନ କରିବା ଅର୍ଥ ନୁହେଁ ଅନ୍ୟାୟ ଅତ୍ୟାଚାରକୁ ମୁଣ୍ଡପାତି ଶିରୋଧାର୍ଯ୍ୟ କରିବା। ଅନ୍ୟାୟ ଅତ୍ୟାଚାରକୁ ସହିଯିବା ଗୋଟିଏ କଥା ଓ ଏହାର ନିରବ ପ୍ରତିବାଦ କରିବା ଆଉ ଗୋଟିଏ କଥା। ଅନୁଚିତ କାର୍ଯ୍ୟକୁ ଅସହଯୋଗ କରି ନିରବ ପ୍ରତିବାଦ କଲେ ଅନ୍ୟାୟ କରୁଥିବା ଲୋକ ହୃଦୟରେ ଧୀରେ ଧୀରେ ଗଭୀର କ୍ଷତ ସୃଷ୍ଟି ହୁଏ। ସେ କ୍ଷତ ଅତ୍ୟାଚାରୀର ଅସ୍ଥିମଜ୍ଜା ଓ ରକ୍ତକଣିକାରୁ ସୁଦ୍ଧା ଅନୁଚିତ ଚିନ୍ତା ଦୂରୀଭୂତ କରିଦିଏ। ତାର ଚେତନାର ରୂପାନ୍ତର ଘଟେ। ସେ ପାଲଟିଯାଏ ଭିନ୍ନ ମଣିଷ। ଅଥଚ ତର୍କବିତର୍କ ଓ ବାକ୍-ବିତଣ୍ଡା ଦ୍ୱାରା ଭୁଲ୍ କରୁଥିବା ବ୍ୟକ୍ତି ଉପରେ ଚାପ ପ୍ରୟୋଗ କଲେ ସାମୟିକ ଭାବରେ ସିନା ସେ ସେଥିରୁ କ୍ଷାନ୍ତ ରହେ ପରବର୍ତ୍ତୀ ପର୍ଯ୍ୟାୟରେ କଇଁଛ ଭଳି ପୁଣି ସେ ନିଜ ରୂପ ପ୍ରଦର୍ଶନ କରେ। ନିରବତା ଆଦୌ ଦୁର୍ବଳତା କିମ୍ବା ଅପାରଗ ପଣିଆ ନୁହେଁ। ଏଥିରେ ବ୍ୟକ୍ତିର ସଂଯମ ଧୈର୍ଯ୍ୟଶୀଳତା ଓ ବୁଦ୍ଧିମତ୍ତାର ପରୀକ୍ଷା ହୋଇଥାଏ। ନିରୁଦ୍‌ବେଗ ରହି ଯେ କୌଣସି ପରିସ୍ଥିତିର ସମ୍ମୁଖୀନ ହେବା ପାଇଁ ଶ୍ରୀମଦ୍ ଭଗବତ୍ ଗୀତାରେ ଭଗବାନ ଶ୍ରୀକୃଷ୍ଣ ଅର୍ଜ୍ଜୁନଙ୍କୁ

ଉପଦେଶ ଦେଇଛନ୍ତି। ସୁଖ ଓ ଦୁଃଖରେ ନିରୁଦ୍‌ବେଗ ରହୁଥିବା ବ୍ୟକ୍ତିକୁ ସେ ସ୍ଥିତପ୍ରଜ୍ଞର ଆଖ୍ୟା ଦେଇଛନ୍ତି।

ଯେକୌଣସି ଅଭାବିତ ପରିସ୍ଥିତିର ସମ୍ମୁଖୀନ ହେବା ପୂର୍ବରୁ ନିଜ ଉପରୁ ନିୟନ୍ତ୍ରଣ ହରେଇଦେଲେ ପରିସ୍ଥିତି ଓଲଟା ହୋଇଯାଏ। କ୍ରୋଧକୁ ବ୍ରହ୍ମଚଣ୍ଡାଳ ବୋଲି କୁହାଯାଇଛି। କ୍ରୋଧରେ ହିତାହିତ ଶୂନ୍ୟ ବ୍ୟକ୍ତି ଗୋଟିଏ ମୁହୂର୍ତ୍ତ ଭିତରେ ଧ୍ୱଂସର ଇସ୍ତାହାର ଟୋଳି ଦିଏ। କିନ୍ତୁ କ୍ରୋଧକୁ ଅନ୍ତର ଭିତରେ ସମ୍ପାଦି ରଖି ବୁଦ୍ଧିମତାର ସହ କାର୍ଯ୍ୟକଲେ ଯେତେ ଶକ୍ତିଶାଳୀ ଶତ୍ରୁ ହେଲେ ସୁଦ୍ଧା ସେ ପରାଜୟ ସ୍ୱୀକାର କରେ।

ଶତ୍ରୁତାର ରୂପରେଖ ହେଉ କି ପ୍ରେମର ପରିଭାଷା ହେଉ ନିରବତାର ଭାଷା ସର୍ବଦା ସମ୍ଭ୍ରାନ୍ତ ଓ ରୁଚିଶୀଳ। ଏହାଦ୍ୱାରା ଆଶାତୀତ ଅସାଧ୍ୟ ସାଧନ କରାଯାଇପାରେ। ଥରେ ଏ ଭାଷାକୁ ଆପଣେଇଲେ ଜୀବନ ଓ ଜଗତ ସବୁକିଛି ସହଜ ଓ ସୁନ୍ଦର ହୋଇଯାଏ। ଶତ୍ରୁ ଓ ମିତ୍ର ସମସ୍ତେ ଏକାକାର ହୋଇ ପଡ଼ନ୍ତି। ସ୍ନେହ, ପ୍ରେମ ଓ ମମତାର ଦୀପ୍ତିରେ ଜୀବନ ଦୀପ୍ତିମନ୍ତ ହୋଇଉଠେ। ଏସବୁ ହୃଦୟଙ୍ଗମ କରିବା ସତ୍ତ୍ୱେ, ତଥାପି କାହିଁକି ମଣିଷ ଭିନ୍ନ ପନ୍ଥା ଅବଲମ୍ବନ କରେ ? ଏହା ମଣିଷର ପ୍ରବୃତ୍ତିଗତ ନା ଇଚ୍ଛାକୃତ ? ତାହା ଯେଉଁ କୃତ ହେଇଥାଉ ନା କାହିଁକି ମଣିଷ କ'ଣ ସତରେ ଏଥିରୁ ମୁକୁଳିବାକୁ ଅସମର୍ଥ !

ମଣିଷ ତାର ହିତାହିତ ଜ୍ଞାନ ଓ ସ୍ଥିତ ପ୍ରଜ୍ଞତା ଉପରେ ଆସ୍ଥା ପ୍ରକଟ କଲେ ଏତାଦୃଶ ଐତିହାସିକ ଅବୁଝାମଣା ଓ ଅହଂକାର ମୁକ୍ତ ହୋଇପାରିବ। ଏହା ଫଳରେ ସମଗ୍ର ସାମାଜିକ ସଂହତି ପ୍ରତିଷ୍ଠା ହେବା ସହ ମଣିଷ ମନରୁ ଯାବତୀୟ ନକରାତ୍ମକ ଭାବନା ଦୂରୀଭୂତ ହୋଇ ସମାଜ ଜୀବନ ହୋଇ ଉଠିବ ନିରାମୟ ଓ ଶାନ୍ତ। ମଣିଷ ଜାତିର ସଦ୍‌ବୁଦ୍ଧି ଉଦୟ ହେଉ।

ଅନୁପମ ଭାରତ

୪, ଜୁନ, ୨୦୦୫

# ସଙ୍କଟରେ ମାତୃଭାଷା

ମାତୃଭାଷା ଆଜି ସଂକଟରେ। ନୂତନ ପିଢି ମାନଙ୍କର ମାତୃଭାଷା ପ୍ରତି ସ୍ୱାଭାବିକ ମମତ୍ୱବୋଧ ରହୁନାହିଁ ବୋଲି ଆମ ଭିତରେ ଏକଚାପ ଅସନ୍ତୋଷ ଓ ଅଭିଯୋଗ। ହିନ୍ଦୀ ଓ ଇଂରେଜୀ ଭାଷା ଆମ ସମାଜକୁ ଏପରି ମୋହାଚ୍ଛନ୍ନ କରି ଦେଇଛି ଯେ, ମାତୃଭାଷାର ଭବିଷ୍ୟତ ସମ୍ପର୍କରେ ବୁଦ୍ଧିଜୀବୀ ମହଲରେ ଅନେକ ପ୍ରଶ୍ନବାଚୀ ସୃଷ୍ଟି ହୋଇଛି। ଗତ ଦୁଇ ତିନିବର୍ଷ ହେଲା ହାଇସ୍କୁଲ ସର୍ଟିଫିକେଟ୍ ପରୀକ୍ଷାରେ ମାତୃଭାଷା ଓଡିଆରେ ସର୍ବାଧିକ ଛାତ୍ରଛାତ୍ରୀ ଅକୃତକାର୍ଯ୍ୟ ହେବା ଏହି ଆଶଙ୍କାକୁ ଆହୁରି ଦ୍ୱିଗୁଣିତ କରି ଦେଇଛି। ଆଶଙ୍କା ମୂଳକ ନୁହେଁ, ଯେଉଁଭଳି ଭାବରେ ଓଡିଆ ଭାଷା ପ୍ରତି ଅଶ୍ରଦ୍ଧା ଓ ବିତସ୍ପୃହତା ବୃଦ୍ଧି ପାଉଛି ଓଡିଶାରେ ଆଉ ଗୋଟିଏ ଭାଷା ଆନ୍ଦୋଳନର ଆବଶ୍ୟକତା ଅନୁଭୂତ ହେଉଛି। କିନ୍ତୁ କ୍ଷୋଭର ବିଷୟ ତତ୍‌କାଳୀନ ଭାଷା ସୁରକ୍ଷା ଆନ୍ଦୋଳନର ମୁଖ୍ୟ ପୁରୋଧା ଫକୀର ମୋହନ ସେନାପତି, ରେଭେନ୍‌ସା ସାହେବ ଓ ବୀମ୍‌ସ ସାହେବଙ୍କର ଯେଉଁ ଆନ୍ତରିକତା ଥିଲା ସେ ଆନ୍ତରିକତା ସମ୍ପ୍ରତି ଯେଉଁମାନେ ମାତୃଭାଷାର ସୁରକ୍ଷା ପାଇଁ ଠିକା ନେଇଛନ୍ତି ବୋଲି ଦାବି କରନ୍ତି ସେମାନଙ୍କ ପାଖରେ ନାହିଁ। ସେମାନଙ୍କ ଘରେ ଇଂରେଜୀ ଭାଷା ଓ ଅଜବକାଇଦାକୁ ଆଭିଜାତ୍ୟର ଲକ୍ଷଣ ବୋଲି ଗ୍ରହଣ କରାଯାଏ।

ବିଶ୍ୱବିଖ୍ୟାତ ବୈଜ୍ଞାନିକ ଆଇନଷ୍ଟାଇନ୍ ଥରେ କରିଥିଲେ ଜୀବନର ଶ୍ରେଷ୍ଠ ଶିକ୍ଷା ସେ ଗ୍ରହଣ କରିଛନ୍ତି ତାଙ୍କ ଜୀବନର ପ୍ରଥମ ପାଞ୍ଚ ବର୍ଷରେ। ଏହି ସମୟରେ ସେ ଯେଉଁ ମାତୃଭାଷା ଶିକ୍ଷା କରିଥିଲେ ତାହା ତାଙ୍କ ସମଗ୍ର ଜୀବନ କାଳର ଶିକ୍ଷା ଓ ସଂସ୍କାରକୁ ନିୟନ୍ତ୍ରିତ କରିଥିଲା। ଗୌତମ ବୁଦ୍ଧଙ୍କ ସମୟରେ ସମାଜରେ ସଂସ୍କୃତଭାଷା ଏକ ସମ୍ଭ୍ରାନ୍ତ ଭାଷାର ମାନ୍ୟତା ଦାବୀ କରୁଥିଲେ ସୁଦ୍ଧା ଏହା ମାତୃଭାଷା ନଥିଲା। ସେ ଚାହିଁଥିଲେ ଏହି ଭାଷାରେ ତାଙ୍କ ଧର୍ମ ତତ୍ତ୍ୱ ପ୍ରଚାର କରି ବୌଦ୍ଧଧର୍ମକୁ ଆହୁରି ଅଭିଜାତ କରିପାରିଥାନ୍ତେ। ତା' ଫଳରେ ପରବର୍ତ୍ତୀ କାଳରେ ବ୍ରାହ୍ମଣ୍ୟ ଧର୍ମ ଓ ବୌଦ୍ଧ ଧର୍ମ ଭିତରେ ଯେଉଁ ବୈରଭାବ ସୃଷ୍ଟି ହେଲା ତାକୁ ଏଡ଼ାଇ ପାରିଥା'ନ୍ତେ। କିନ୍ତୁ ସେ ସଂସ୍କୃତ ପରିବର୍ତ୍ତେ କଥିତ ପାଲି ଭାଷାକୁ ଧର୍ମ ପ୍ରଚାରର ମାଧ୍ୟମ ରୂପେ ଗ୍ରହଣ କରିଥିଲେ। ଯାହା ଫଳରେ ତାଙ୍କ ବକ୍ତବ୍ୟର ସୂକ୍ଷ୍ମାତିସୂକ୍ଷ୍ମ ଅନୁଭବ ଲୋକଙ୍କ ନିକଟରେ ପହଞ୍ଚିପାରିଲା ଓ ଦେଶଠାରୁ ବିଦେଶ ପର୍ଯ୍ୟନ୍ତ ଏ ଧର୍ମ ବିସ୍ତାର ସମ୍ଭବ ହୋଇପାରିଲା। ରାମାନୁଜ, ତୁଳସୀଦାସ, ନାନକ, କବୀର ଓ

ଶ୍ରୀଚୈତନ୍ୟ ଆଦି ଆପଣାର ଭାବ ବୁଝେଇବା ପାଇଁ କୌଣସି ସମ୍ଭ୍ରାନ୍ତ ଭାଷାର ଆଶ୍ରୟ ନ ଲୋଡ଼ି ମାତୃଭାଷାର ମାଧ୍ୟମ ଗ୍ରହଣ କରିଥିଲେ। ଯାହା ଫଳରେ ସେମାନଙ୍କ ବାର୍ତ୍ତା ସିଧାସଳଖ ଜନତାର ହୃଦତନ୍ତ୍ରୀକୁ ସ୍ପର୍ଶ କରିଥିଲା ଓ ସମାଜରେ ଗୋଟିଏ ଧାର୍ମିକ ବିପ୍ଳବ ସମ୍ଭବ ହୋଇପାରିଥିଲା।

ପ୍ରତ୍ୟେକ ଯୁଗରେ ସମୟର ଏକ ସ୍ୱତନ୍ତ୍ର ଆହ୍ୱାନ ରହିଥାଏ। ସେ ଆହ୍ୱାନର ସ୍ୱର ସହ ସଂଯୋଜିତ ହେବା ପାଇଁ ମଣିଷ ନିଜକୁ ପ୍ରସ୍ତୁତ କରେ। ଯେଉଁଠି ଏ ଆହ୍ୱାନକୁ ମଣିଷ ଅବଜ୍ଞା କରେ ସେ ପ୍ରଗତି ବଦଳରେ ଦୁର୍ଗତିକୁ ହିଁ ସ୍ୱାଗତ କରି ଆଣିଥାଏ। ସାଂପ୍ରତିକ ଯୁଗରେ ଏଇଭଳି ଏକ ଆହ୍ୱାନ ଅନୁଭବ କରିହୁଏ। ସଭ୍ୟତାର ଜଗତିକରଣ ଫଳରେ ଆଜି ବିଶ୍ୱ ସମୁଦାୟ ଗୋଟିଏ ଗ୍ରାମ ହେବାପାଇଁ ଯାଉଛି। ପ୍ରତି ମୁହୂର୍ତ୍ତରେ ନୂତନ ଜ୍ଞାନ କୌଶଳ, ଉଦ୍ଭାବନ ଓ ଆବିଷ୍କାର ବିଶ୍ୱର ବୌଦ୍ଧିକ ସ୍ତରକୁ ଏତେ ମାତ୍ରାରେ ସମୃଦ୍ଧ କରିଚାଲିଛି ଯେ ଏଠି କୌଣସି ନିର୍ଦ୍ଦିଷ୍ଟ ବସ୍ତୁ କିମ୍ବା ଭାଷାକୁ ଜାବୁଡ଼ି ଧରି ରହିଲେ ଆମେ ସଭ୍ୟତାର ଦୌଡ଼ରେ କାହିଁ କେତେ ପଛରେ ପଡ଼ିଯିବା। ଭାବ ପ୍ରକାଶ ଓ ଭାବ ଆହରଣ ପାଇଁ କୌଣସି ଗୋଟିଏ ନିର୍ଦ୍ଦିଷ୍ଟ ଭାଷା ଆଜି ଯଥେଷ୍ଟ ନୁହେଁ। ବୋଧହୁଏ ଏପରି ଦିନ ଆସିବ ବିଶ୍ୱର ସକଳ ଭାଷାରୁ ଆହରଣ ଓ ସମୀକରଣରେ ନିର୍ମିତ ଅଭିଧାନ ଆମ ଭାବ ପ୍ରକାଶ ପାଇଁ ଆବଶ୍ୟକ ହେବ।

ସାଧାରଣରେ ଇଂରେଜୀ ଭାଷାର ଆମ ଉପରେ ପ୍ରଭାବ ବିସ୍ତାରକୁ ଲକ୍ଷ୍ୟ କରି ଆମେ ମୋଟାମୋଟି ଭାବରେ ଇଂରେଜମାନଙ୍କୁ ଦୋଷ ଦେଉ। ଇଂରେଜମାନେ ଚାଲିଗଲେ, କିନ୍ତୁ ତାଙ୍କ ଭାଷାକୁ ଆମ ଉପରେ ପ୍ରଭୁତ୍ୱ ବିସ୍ତାର କରିବା ପାଇଁ ଛାଡ଼ି ଚାଲିଗଲେ, ଏମିତି କିଛି କହି ଆମେ କିଛି ପରିମାଣରେ ଆମ ଦୋଷ ଟାଳି ଦେଇଥାଉ। କିନ୍ତୁ ଇଂରେଜମାନେ ଯେତେବେଳେ ଆମ ଦେଶରେ ଆଧୁନିକ ଶିକ୍ଷା ପ୍ରଚଳନ କଲେ ସେଥିରେ ସେମାନେ ଭର୍ଣ୍ଣାକୁଲାର ଭାଷା ବା ପ୍ରାନ୍ତୀୟ ଭାଷା ଉପରେ ଗୁରୁତ୍ୱ ଦେଇଥିଲେ। ଶିକ୍ଷାଦାନର ପ୍ରଥମ ଭାଷା ଥିଲା ମାତୃଭାଷା ଓ ୨ୟ ଭାଷା ରୂପେ ଇଂରେଜ ଭାଷା ଗ୍ରହଣ କରାଯାଇଥିଲା। ସେମାନେ ସେତେବେଳେ ଏ ଦେଶର ଭାଗ୍ୟ ବିଧାତା ଥିଲେ। ଚାହିଁଥିଲେ ଚାପ ପ୍ରୟୋଗ ଦ୍ୱାରା ଇଂରେଜୀ ଭାଷାକୁ ଆମ ଦେଶରେ ସର୍ବବ୍ୟାପୀ କରାଇପାରିଥା'ନ୍ତେ। କିନ୍ତୁ ସେମାନେ ତାହା କରିନଥିଲେ। ଅପରପକ୍ଷେ ପ୍ରାନ୍ତୀୟ ଭାଷାର ଉନ୍ନତି ପାଇଁ ଏ ଭାଷାରେ ଅଭିଧାନ, ଭାଷା ସାହିତ୍ୟର ଇତିହାସ ଏବଂ ପାଠ୍ୟ ପୁସ୍ତକ ଆଦି ରଚନା ଉପରେ ପ୍ରାଧାନ୍ୟ ଦେଇଥିଲେ। ଆମ ସଂସ୍କୃତି ଉପରେ ଗବେଷଣା କରି ଆମ ଆତ୍ମ ବିଶ୍ୱାସକୁ ଦୃଢ଼ କରିଥିଲେ। ଏବେ ସୁଦ୍ଧା ଆମ ସାହିତ୍ୟ ଓ ସଂସ୍କୃତି ସଂପର୍କୀୟ ତଥ୍ୟ ଆହରଣ ବେଳେ ଆମେ ଇଂରେଜମାନଙ୍କ ଦ୍ୱାରା ପ୍ରଣୟନ କରାହୋଇଥିବା ଗ୍ରନ୍ଥମାନଙ୍କୁ ମୂଳସୂତ୍ର ରୂପେ ଗ୍ରହଣ କରୁ।

ଦେଶ ସ୍ୱାଧୀନ ହେଲାପରେ ଦେଶରେ ତ୍ରିଭାଷୀ ସୂତ୍ରର ପ୍ରଚଳନ ହେଲା। ପ୍ରଥମେ ପ୍ରାନ୍ତୀୟ, ୨ୟରେ ହିନ୍ଦି ଓ ୩ୟରେ ଇଂରେଜୀ ଭାଷା। ଉତ୍ତର ଭାରତର ହିନ୍ଦି ଭାଷାଭାଷୀ ଜନତା ଆନ୍ତରିକତାର ସହ ଏହାକୁ ଗ୍ରହଣ କଲାବେଳକୁ ଦକ୍ଷିଣ ଭାରତୀୟମାନେ ହିନ୍ଦିଭାଷାକୁ ରାଷ୍ଟ୍ର ଭାଷା ରୂପେ ଗ୍ରହଣ କରିବାର ପ୍ରସ୍ତାବକୁ ଦୃଢ଼ ପ୍ରତିବାଦ କଲେ। ସମ୍ବିଧାନ ବଦଳ ପର୍ଯ୍ୟନ୍ତ କଥା ଗଲା। ଓଡ଼ିଶା ଭଳି ଦୁର୍ବଳ ପ୍ରଦେଶମାନେ ହିନ୍ଦିକୁ ବିରୋଧ ନ କରିବାରୁ ଏ ଭାଷା ସେମାନଙ୍କର ଅସ୍ଥିମଜ୍ଜାଗତ ହୋଇଗଲା। ଓଡ଼ିଆ ଲୋକ ଓଡ଼ିଶା ଭିତରେ ପରିଷ୍କାର ହିନ୍ଦିରେ କଥା ବାର୍ତ୍ତା ହେଲେ। ପଶ୍ଚିମ ଓଡ଼ିଶାର ଭାଷାକୁ ତ ହିନ୍ଦି ଭାଷାଭାଷୀ ବ୍ୟବସାୟୀମାନେ ସଂପୂର୍ଣ୍ଣ କରଗତ କରିସାରିଲେଣି। ବିଜୟୀର ଭାଷାକୁ ବିଜିତ ଯେପରି ସମ୍ମାନର ସହ ଗ୍ରହଣ କରେ ଆର୍ଥିକ ସ୍ୱଚ୍ଛଳ ସଂପ୍ରଦାୟର ଭାଷା ଅଭାବୀ ଜନତା ସେମିତି ସମ୍ଭ୍ରମର ସହ ଗ୍ରହଣ କରେ। ତେଣୁ ସ୍ୱତଃ ମାତୃଭାଷା ଅବହେଳିତ ହେଲା।

ମାତୃଭାଷା ବ୍ୟତୀତ ଅନ୍ୟ ଭାଷାମାନଙ୍କରେ ପାରଦର୍ଶିତା ବ୍ୟକ୍ତିର ସାମର୍ଥ୍ୟ ଓ ଦକ୍ଷତା ଉପରେ ନିର୍ଭର କରେ। ଆମ ପୂର୍ବତନ ପ୍ରଧାନମନ୍ତ୍ରୀ ପି.ଭି. ନରସିଂହ ରାଓ ଚଉଦଟି ଭାଷାରେ ପାରଦର୍ଶିତା ଲାଭ କରିଥିଲେ। ଅଥଚ ଆମ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ମନ୍ତ୍ରୀପଦ ସମ୍ଭାଳିବାର ଦୀର୍ଘଦିନ ବିତିଗଲେ ସୁଦ୍ଧା ମାତୃଭାଷାକୁ ଆୟତ୍ତ କରିପାରିଲେ ନାହିଁ, ବିଭିନ୍ନ ଭାଷାରେ ବ୍ୟୁତ୍ପତ୍ତି ଲାଭ ଦ୍ୱାରା ଜ୍ଞାନର ପରିସୀମା ବୃଦ୍ଧି ପାଇବା ସଙ୍ଗେ ସଙ୍ଗେ ବ୍ୟକ୍ତିତ୍ୱ ଶାଣିତ ହୋଇଥାଏ।

କିନ୍ତୁ ମହାସାଗରରେ ସନ୍ତରଣ କରିବାକୁ ଯାଇ ଆମେ ଆମ ବାଡ଼ିତଳେ ପ୍ରବାହିତ ହେଉଥିବା ଅଙ୍କାବଙ୍କା ନଈଟିକୁ ବିସ୍ମୃତ ହେବା ଠିକ୍ ନୁହେଁ। ଦିଗନ୍ତର ସନ୍ଧାନ କରୁଥିବା ଆମେ ଆମ ପାଦତଳର ମାଟି ଚକଡ଼ାକୁ ବିସ୍ମୃତ ହୋଇଗଲେ ସଭ୍ୟତା କିମ୍ଭୂତ କିମାକାର ହୋଇପଡ଼ିବ। ଏଇଭଳି ଏକ ପ୍ରବାହ ଆମ ନୂତନ ପିଢ଼ି ଭିତରେ ପରିଲକ୍ଷିତ ହେଉଛି। ଆମ ଭାଷା ଓ ସଂସ୍କୃତିର ମୌଳିକତା ପ୍ରତି ଦୃଷ୍ଟି ନ ଦେଇ ଆମେ ଅଭିଭାବକମାନେ ଆମ ପିଲାଙ୍କ ଦରୋଟି ଭାଷାର ଇଂରେଜୀ ଉଚ୍ଚାରଣ ଶୁଣି ଗଭୀର ଆତ୍ମ ସନ୍ତୋଷ ଲାଭ କରୁଛୁ। ଗୋଟିଏ ଭାଷା ଯେଉଁଠି ଭାବ ପ୍ରକାଶ କରିବାକୁ ଅକ୍ଷମ ସେଠାରେ ବିକଳ୍ପ ଭାଷା ବ୍ୟବହାର କରିବା ଅପରାଧ ନୁହେଁ ବରଂ ବିଜ୍ଞତାର ପରିଚାୟକ। ଭାଷା ବିଚାରରେ ରକ୍ଷଣଶୀଳ ମନୋବୃତ୍ତି ଭାଷାର ବିକାଶକୁ ସଂକୁଚିତ କରିଦିଏ। ଇଂରେଜୀ ଭାଷା ଏ ଦୃଷ୍ଟିରୁ ଯଥେଷ୍ଟ ଉଦାର ଥିବାରୁ ବିଶ୍ୱର ଏକ ଶ୍ରେଷ୍ଠ ଭାଷାର ମାନ୍ୟତା ପାଇଛି। କିନ୍ତୁ ନିଜର ଜ୍ଞାନ ଗାରିମାର ଅହମିକା ପ୍ରଦର୍ଶନ ପାଇଁ ଆମ ଭାଷାକୁ ଅବଜ୍ଞା କଲେ ଏହା ରସାତଳଗାମୀ ହୋଇପଡ଼ିବ। ଯୁଗୀୟ ଆବଶ୍ୟକତାର ପରିପୂର୍ତ୍ତି ନିମନ୍ତେ ଆମ ପିଲାଏ ଇଂରେଜୀ ସହ ଏକାଧିକ ଭାଷା ଶିକ୍ଷା କରନ୍ତୁ। ବିଶ୍ୱ ସଭ୍ୟତା ଏତେ ଦ୍ରୁତାୟନ ହେଉଛି ଯେ

ଆମେ ଚାହିଁଲେ ବି ଆମ ଭାଷାର ମୌଳିକତା ରକ୍ଷା କରିପାରିବା ନାହିଁ। ବିଶ୍ୱର ଅନ୍ୟାନ୍ୟ ଭାଷା ସମୂହ ଆମ ଭାଷା ଭିତରକୁ ଜବରଦସ୍ତ ପଶିଆସିବ। ସଭ୍ୟତା ଓ ସଂସ୍କୃତିର ଅବହେଳା ହେଉଛି ବୋଲି ନୂତନ ପିଢ଼ିର ବିରାଟ ସମ୍ଭାବନାକୁ ସଙ୍କୁଚିତ କରିବା ବିଜ୍ଞତାର ପରିଚାୟକ ନୁହେଁ। ସେମାନେ ଜଗତିକରଣ ଭିତରେ ଅନ୍ତର୍ଗର୍ଭିତ ହୋଇଯାଆନ୍ତୁ। କିନ୍ତୁ ଯେଉଁଠାକୁ ଗଲେ ସୁଦ୍ଧା ମାତୃଭାଷାର ଧ୍ୱଜା ଖଣ୍ଡେ ଖଣ୍ଡେ ହାତରେ ଥାଉ। ନିଜେ ଓଡ଼ିଆ ବୋଲି ଗର୍ବ କରନ୍ତୁ। ନିଜ ଐତିହ୍ୟ ଓ ପରଂପରା ମାଧ୍ୟମରେ ସ୍ୱାଭିମାନ ବଜାୟ ରଖନ୍ତୁ। ଏଥିପାଇଁ ଆମ ଅଭିଭାବକମାନଙ୍କର ଗୁରୁ ଦାୟିତ୍ୱ ରହିଛି। ନୂତନ ପିଢ଼ିର ବୌଦ୍ଧିକତାର ଭିତ୍ତିଭୂମି ପର୍ଯ୍ୟାୟରେ ଆମ ପ୍ରାଚ୍ୟ ଜୀବନାଦର୍ଶ ସଂପର୍କରେ ସେମାନଙ୍କୁ ଏପରି ଶିକ୍ଷା ଦେବା ଦରକାର, ଯେଉଁ ଶିକ୍ଷା ସଂସ୍କାର ହୋଇ ସେମାନଙ୍କ ସମଗ୍ର ଜୀବନ ପ୍ରବାହକୁ, ପୃଥିବୀର ଯେଉଁ କୋଣ ଅନୁକୋଣରେ ରହିଲେ ସୁଦ୍ଧା ଯଥେଷ୍ଟ ପ୍ରଭାବିତ କରିବ।

ବିଶ୍ୱ ରାଜଦାଣ୍ଡରେ ଗର୍ବୋନ୍ନତ ହେବାପାଇଁ ଆମର ଯଥେଷ୍ଟ ଉପାଦାନ ରହିଛି। ସେ ଉପାଦାନକୁ ବିଶ୍ୱାଭିମୁଖୀ କରିବାର ଏବେ ସୁଯୋଗ ଆସିଛି। ଆମେ ଅଭିଭାବକମାନେ ଆମ ନୂତନ ପିଢ଼ିକୁ ପୁଞ୍ଜିକରି ଏହାକୁ ବିଶ୍ୱ ଦରବାରରେ ଉପସ୍ଥାପନା କରିପାରିବା। ସେଥିପାଇଁ ପ୍ରଥମେ ଆମେ ଆମ ନ୍ୟୁନବୋଧତାରୁ ମୁକ୍ତ ହେବା ଦରକାର। ଆମ ଐତିହ୍ୟ ସଂସ୍କୃତି ପ୍ରତି ଆମ ପିଢ଼ିର ମମତ୍ୱବୋଧ ହିଁ ଭବିଷ୍ୟତ ପିଢ଼ିର ଜୀବନ ଶୈଳୀକୁ ନିୟନ୍ତ୍ରିତ କରିବ। କିଏ କେଉଁ ଭାଷାରେ ଭାବ ପ୍ରକାଶ କଲା ବଡ଼କଥା ନୁହେଁ, ନିଜ ଭାଷା, ସଂସ୍କୃତି ଓ ପରଂପରା ପ୍ରତି ଭାବଗତ ସ୍ତରରେ କିଏ କେତେ ବନ୍ଧା ପଡ଼ିଛି ତାହା ହିଁ ବଡ଼କଥା। ଓଡ଼ିଶାର ସର୍ବାଙ୍ଗୀନ ଉନ୍ନତି ପାଇଁ ନିଜର ସର୍ବସ୍ୱ ଉତ୍ସର୍ଗ କରିଦେଇଥିବା, ବଙ୍ଗାଳୀମାନଙ୍କ ପାଖରେ ସଦାସର୍ବଦା ଓଡ଼ିଶାର ସ୍ୱାଭିମାନ ବଜାୟ ରଖୁଥିବା ଉତ୍କଳ ଗୌରବ ମଧୁସୂଦନ ବଙ୍ଗଳା ଭାଷାରେ କଥାବାର୍ତ୍ତା କରୁଥିଲେ। ନିଜେ ଖ୍ରୀଷ୍ଟିୟାନ ଧର୍ମଗ୍ରହଣ କରିଥିଲେ ସୁଦ୍ଧା ଓଡ଼ିଶାର ପ୍ରାଣବିନ୍ଦୁ ଶ୍ରୀମନ୍ଦିର ଓ ଶ୍ରୀଜଗନ୍ନାଥଙ୍କ ସ୍ୱାର୍ଥ ରକ୍ଷା ପାଇଁ ସେ କଲିକତା ହାଇକୋର୍ଟ ପର୍ଯ୍ୟନ୍ତ ଲଢ଼ି ଶେଷରେ ବିଜୟଶ୍ରୀ ମଣ୍ଡିତ ହୋଇଥିଲେ। ଭାଷା ବଞ୍ଚିଛି, ବଞ୍ଚିବ ଆହରଣ ଓ ସମୀକରଣରେ ଏ ଭାଷା ଆହୁରି ସମୃଦ୍ଧ ହେବ। ଅସଲ କଥା ହେଲା ଆମ ଐତିହ୍ୟ ଓ ସଂସ୍କୃତି ପ୍ରତି ଯଦି ଆମେ ବିମୁଖ ହେବା ଆମେ ନିଃସ୍ୱ ହୋଇପଡ଼ିବା, ବିଶ୍ୱ ଦରବାରରେ ଆମ ସ୍ଥିତି ଶୂନ୍ୟ ହୋଇପଡ଼ିବ।

ଅନୁପମ ଭାରତ

୧୨ ମଇ, ୨୦୦୫

# ପ୍ରତିଭା ପୂଜା ଓ ପ୍ରତିମା ପୂଜା

ସମାଜରେ ପ୍ରତିଷ୍ଠିତ ହେବାପାଇଁ ପ୍ରତ୍ୟେକ ବ୍ୟକ୍ତିର ଅବଚେତନ ସ୍ତରରେ ଏକ ସୁପ୍ତ କାମନା ଥାଏ। କାହାର ଏ କାମନା ଅତି ତୀବ୍ର ତ କାହାର ଅତି ମନ୍ଥର ହୋଇପାରେ। କିନ୍ତୁ ସମସ୍ତଙ୍କ ମନରେ ଥାଏ ବହୁ ଚର୍ଚ୍ଚିତ ହେବାର ସ୍ୱପ୍ନ। ସେଇଥିପାଇଁ ବ୍ୟକ୍ତି ଲୋଡ଼େ 'ଆତ୍ମପ୍ରକାଶ'। ଏହା ବ୍ୟକ୍ତିତ୍ୱର ଏକ ସକରାତ୍ମକ ଦିଗ। ଏହି ଆତ୍ମପ୍ରକାଶର ମାଧ୍ୟମ ଯେତେ ଉଚ୍ଚକୋଟୀର, ନିଷ୍କଳଙ୍କ ଓ ତ୍ରୁଟିଶୂନ୍ୟ ହୁଏ ବ୍ୟକ୍ତିତ୍ୱ ସେତେ ଉଜ୍ଜ୍ୱଳ ଓ ଶାଣିତ ହୁଏ। ମାତ୍ର ଶସ୍ତା ଲୋକପ୍ରିୟତା ନାଁରେ ବ୍ୟକ୍ତି ଏ ମାଧ୍ୟମଟିକୁ ଉଦ୍ଦେଶ୍ୟ ପ୍ରଣୋଦିତ ଓ ନ୍ୟସ୍ତସ୍ୱାର୍ଥ ବିଶିଷ୍ଟ କରିଦେଲେ ସେ ସମୟର ଇତିହାସରେ ଏକ କଳଙ୍କିତ ବ୍ୟକ୍ତିତ୍ୱ ରୂପେ ପରିଗଣିତ ହୁଏ।

ବିଂଶତମ ଶତାବ୍ଦୀରେ ଜାପାନର ପ୍ରଧାନମନ୍ତ୍ରୀଙ୍କୁ ହତ୍ୟା ଉଦ୍ୟମ କରୁଥିବା ଜଣେ ଯୁବକ ପୋଲିସ୍ ହାତରେ ଧରାପଡ଼ିଥିଲା। ପୋଲିସ ତାକୁ ବହୁତ ଜେରା କରିବା ପରେ ଜଣାପଡ଼ିଲା, ପ୍ରଧାନମନ୍ତ୍ରୀଙ୍କୁ ହତ୍ୟା କରିବା ତାର ପ୍ରକୃତ ଉଦ୍ଦେଶ୍ୟ ନଥିଲା। ସମ୍ବାଦପତ୍ର ମାନଙ୍କରେ ଶିରୋନାମା ହୋଇ ତାର ନାମ ଓ କାର୍ଯ୍ୟ ପ୍ରକାଶିତ ହେଉ, ଏୟା ହିଁ ଥିଲା ତାର ନିରୀହ କାମନା ! ସତରେ କେଡେ ବିଚିତ୍ର ଏ ଲୋକ ଚରିତ୍ର। ଆମ ମାନଙ୍କ ମଧ୍ୟରୁ ଅନେକ ଦେଶ ଓ ଜାତି ପାଇଁ ଆତ୍ମୋତ୍ସର୍ଗ କରିଥିବା ପୂଣ୍ୟଶ୍ଳୋକ ମାନଙ୍କୁ ସମ୍ବାଦର ଶିରେନାମା କରିବାର ମାଧ୍ୟମରୂପେ ଗ୍ରହଣ କରିଥାଉଁ। ବ୍ୟବସାୟୀ ମାନଙ୍କର ସିଜିନ୍ ଭଳି ଏମାନଙ୍କ ପାଇଁ ଅଗଷ୍ଟ ୧୫ ତାରଖ, ଜାନୁଆରୀ ୨୬ ତାରିଖ, ମହାପୁରୁଷ ମାନଙ୍କର ଜନ୍ମତିଥି ଓ ଶ୍ରାଦ୍ଧତିଥି ଏବଂ ଅନ୍ୟାନ୍ୟ ସ୍ମୃତି ଦିବସ ଗୁଡିକ ବେଶ୍ ସୁବିଧା ଜନକ ହୋଇଥାଏ।

ଏହି ଦିବସର ସାର୍ଥକତା ଉଦ୍ଦେଶ୍ୟରେ ସ୍କୁଲ କଲେଜ ସରକାରୀ ଓ ବେସରକାରୀ ଅନୁଷ୍ଠାନ ମାନଙ୍କରେ ବେଶ୍ ତତ୍ପରତା ବୃଦ୍ଧିପାଏ। ଛାତ୍ରଛାତ୍ରୀମାନେ ଅଦମ୍ୟ ଉତ୍ସାହର ସହ ମହାପୁରୁଷମାନଙ୍କର ଜୀବନୀ ଆଲୋଚନା ପର୍ଯ୍ୟାଲୋଚନା, ସ୍ୱାଧୀନତା ସଂଗ୍ରାମର ଇତିହାସ ରୋମନ୍ଥନ ଭିତରେ ବ୍ୟସ୍ତ ରହନ୍ତି। ସହୀଦ୍‌ମାନଙ୍କ ସ୍ମୃତି ଉଦ୍ଦେଶ୍ୟରେ ନିର୍ମିତ ସ୍ମୃତିସ୍ତମ୍ଭ, ସହୀଦ୍ ଭବନ ଓ ପ୍ରତିମୂର୍ତ୍ତି ସବୁକିଛି ହଠାତ୍

ଜୀବନ୍ତ ହୋଇପଡ଼ନ୍ତି । ବର୍ଷସାରା ଅବହେଳିତ ଜୁଆଡ଼ି ଓ ମଦ୍ୟପମାନଙ୍କ ଆଡ୍ଡାସ୍ଥଳୀ ପାଲଟିଥିବା ସ୍ଥଳ ଚୂନ ଧଉଳା ହୋଇ ବେଶ୍ ଚକ୍ ଚକ୍ ଦିଶନ୍ତି । ସ୍ୱାଧୀନତା ଦିବସ ଦିନ ମହାପୁରୁଷଙ୍କ ପ୍ରତିମୂର୍ତ୍ତି ଗୁଡ଼ିକ ମଧ୍ୟ ସ୍କୁଲ ଯାଉଥିବା ଛାତ୍ରଚାତ୍ରୀଙ୍କ ଭଳି ବେଶ୍ ସ୍ମାର୍ଟ୍ ଦିଶନ୍ତି । କିନ୍ତୁ ସବୁଠାରୁ ମାରାତ୍ମକ ଭାବରେ ସ୍ମାର୍ଟ ଦିଶନ୍ତି ସହୀଦମାନଙ୍କ ଗଳାରେ ଫୁଲମାଳ ଗଳାଉଥିବା, କଣ୍ଠ ଓ ତଣ୍ଟି ଫଟାଇ ଦେଶ ଓ ଜାତିର ଜୟଗାନ କରୁଥିବା କେତେଜଣ ଆତ୍ମଗର୍ବୀ ବ୍ୟକ୍ତି । ପ୍ରତି ମୂହର୍ତ୍ତରେ ନିଜ ଚଉହଦୀରେ ଥିବା ମଣିଷ ମାନଙ୍କ ଆଖିରୁ ଲୁହ ଝରାଉଥିବା ଏଇ କୁଚକ୍ରୀ ଦଳ ଧୋବ ଧାଉଳିଆ ହୋଇ ହଜିଯାଇଥିବା ଲୋକମାନଙ୍କ ପାଇଁ କୁମ୍ଭୀର କାନ୍ଦଣା କାନ୍ଦନ୍ତି । ସହୀଦମାନଙ୍କ ଇତିହାସ ପ୍ରସାର ବାହାନାରେ ଆତ୍ମପ୍ରଶସ୍ତି ହିଁ ଥାଏ ଏମାନଙ୍କର ଅସଲ ଉଦ୍ଦେଶ୍ୟ । ଗଳଦ୍‌ଘର୍ମ ହୋଇ ଗର୍ଜନ କରୁଥିବା ଏଇ ଦୂରାଚାରୀମାନଙ୍କ ନାନା କପୋଳ କଳ୍ପିତ କାହାଣୀ ଶୁଣି ଫଟୋ ଫ୍ରେମ୍‌ରେ ବନ୍ଧାଥିବା ବିଚରା ମହାପୁରୁଷମାନେ ସଙ୍କୁଚିତ ହୋଇ ପଡ଼ନ୍ତି । ଏ ପ୍ରସଙ୍ଗରେ ଜର୍ମାନ ଇତିହାସର ଏକ କଳଙ୍କିତ ତଥା ଅବାଞ୍ଛିତ ଆଖ୍ୟାନ ଉଲ୍ଲେଖ୍ୟଯୋଗ୍ୟ ।

ଜୋଆନ୍ ଥିଲା ଜର୍ମାନ ଦେଶର ଗାଈ ଚରାଉଥିବା ଏକ ନିରୀହ ବାଳିକା । ଜୋଆନ୍‌କୁ ଯେତେବେଳେ ୧୨ ବର୍ଷ, ଜର୍ମାନ୍‌କୁ ପଡ଼ିଥିଲା ବିପତ୍ତି । ବୈଦେଶିକ ଆକ୍ରମଣରେ ପରାଜୟ ସ୍ୱୀକାର କରିଥିବା ଜର୍ମାନ୍‌ବାସୀଙ୍କର ସକଳ ଆଶା ଭରସା ଲୁପ୍ତ ହୋଇଥିଲା । ଶାସକ ଓ ରାଜ ପରିଷଦମାନଙ୍କ ମନରେ ନୈରାଶ୍ୟର ଘନକୃଷ୍ଣ କାଳିମା । ଏତିକି ବେଳେ ଗାଇଚରାଳି ବାଳିକା ଜୋଆନ୍ ସେ ଶୁଣିଥିବା ଅଦ୍ଭୁତ ଦୈବୀବାଣୀ ସମ୍ପର୍କରେ ରାଜାଙ୍କ ଆଗରେ ଉଲ୍ଲେଖ କରିଛି । ରାଜାଙ୍କୁ ସେ ଅନୁରୋଧ କରିଛି - 'ତାକୁ ଗୋଟିଏ ସୁଯୋଗ ଦିଆଯାଉ; ଦୈବୀବାଣୀ ଅନୁସାରେ ସେ ଜର୍ମାନର ହୃତଗୌରବ ଫେରାଇ ଆଣିବ, ଶତ୍ରୁକୁ ନିପାତ କରି ଜର୍ମାନୀକୁ ଉଦ୍ଧାର କରିବ ଏବଂ ସେହିଭଳି କିଛି ଅଦୃଶ୍ୟ ଶକ୍ତି ସେ ନିଜ ଭିତରେ ଅନୁଭବ କରୁଛି ବୋଲି ମଧ୍ୟ ସ୍ୱୀକାର କରିଛି । ବାରବର୍ଷର ବାଳିକା ମୁହଁରୁ ଏପରି ଆଶ୍ୱାସନା ଅବିଶ୍ୱାସ୍ୟ ମନେ ହେଲେ ବି ବୁଡ଼ି ଯାଉଥିବା ଲୋକର କୁଟାଖଣ୍ଡକୁ ଆଶ୍ରା ଭଳି ପାତ୍ରମନ୍ତ୍ରୀଙ୍କ ପରାମର୍ଶରେ ରାଜା ତାକୁ ସମ୍ମତି ଜଣାଇଛନ୍ତି । ଅବଶିଷ୍ଟ କିଛି ସୈନ୍ୟ ସାମନ୍ତ ଦେଇ ତାକୁ ସେନାପତି ପଦରେ ଅଭିଷିକ୍ତ କରିଛନ୍ତି । ଆଶ୍ଚର୍ଯ୍ୟର କଥା, ମହାମହିମ ସମ୍ରାଟଙ୍କ ନେତୃତ୍ୱରେ ଯେଉଁ ସୈନ୍ୟମାନେ ଛତ୍ରଭଙ୍ଗ ଦେଇଥିଲେ, ଜୋଆନ୍‌ର ନେତୃତ୍ୱରେ ଅଦମ୍ୟ ଉତ୍ସାହ ସହ ସେମାନେ ଦେଶକୁ ବିଜୟଶ୍ରୀ ମଣ୍ଡିତ କରିଛନ୍ତି । ବୈଦେଶିକ ଶତ୍ରୁ ଛତ୍ରଭଙ୍ଗ ଦେଇଛନ୍ତି । ଜୋଆନ୍‌କୁ ଦେଶର ତ୍ରାଣକର୍ତ୍ତା

ଯୁଦ୍ଧ ଫେରନ୍ତା ଜୋଆନ୍‌କୁ ସ୍ୱାଗତ କରିବା ପାଇଁ ସମସ୍ତ ଉଲ୍ଲାସର ସହ ଅପେକ୍ଷା କରାଯାଇଛି। କିନ୍ତୁ ହଠାତ୍ ପରିସ୍ଥିତି ଓଲଟ ପାଲଟ ହୋଇଯାଉଛି। ଜୋଆନ୍‌ର ବୀରତ୍ୱରେ ଇର୍ଷା ପରାୟଣ ହୋଇ ରାଜ ପରିଷଦ ଷଡ଼ଯନ୍ତ୍ର କରିଛନ୍ତି। ଜୋଆନ୍ ଯେ ସାଧାରଣ ମଣିଷ ନୁହେଁ, ସେ ଡାହାଣୀ, ସେ ଅପଶକ୍ତି, ଦେଶ ପାଇଁ ଅଶୁଭ କାରିଣୀ, ୧୨ ବର୍ଷର ବାଳିକା ଦେହରେ ଏତେ ଶକ୍ତି ଦେଶ ପାଇଁ ମାରାତ୍ମକ ଏହିଭଳି ପ୍ରଚାର ସେମାନେ ଆରମ୍ଭ କରିଦେଇଛନ୍ତି। ନ୍ୟାୟାଳୟରେ ତାର ବିଚାର ହୋଇଛି। ବିଚାରପତିଙ୍କ ନ୍ୟାୟାଦେଶ ଅନୁସାରେ ଜୋଆନ୍‌ର ସ୍ଥିତି ଦେଶ ପାଇଁ ବିପଜ୍ଜନକ ବୋଲି ବିଚାର କରି ତାକୁ ଜୀବନ୍ତଦଗ୍ଧ କରାହୋଇଛି। ଜୋଆନ୍‌ର ମୃତ୍ୟୁପରେ ଏଇ ରାଜପରିଷଦ ପୁନର୍ବାର ଜୋଆନ୍‌ର ପ୍ରଶଂସାରେ ଶତମୁଖ ହୋଇ ପଡ଼ିଲେ। ତାକୁ ମରଣୋତ୍ତର ଉପାଧିରେ ଭୂଷିତ କଲେ। ଜୋଆନ୍‌ରୁ ସେ ହେଲା ସେଣ୍ଟ ଜୋଆନ୍, ତାର ଜନ୍ମ ଜୟନ୍ତୀ ମହା ସମାରୋହରେ ପାଳିତ ହେଲା।

ବଞ୍ଚିଥିଲାବେଳେ ଯେଉଁ ପ୍ରତିଭାଧର ମାନଙ୍କ ପ୍ରତି ଆମେ ଅସହିଷ୍ଣୁ ହୋଇପଡୁ, ମୃତ୍ୟୁପରେ ସେମାନଙ୍କ ପ୍ରତି ଆମ ଅନ୍ତରରେ ଭକ୍ତିଭାବ ଗଦ୍ ଗଦ୍ ହୋଇଯାଏ। ପ୍ରସିଦ୍ଧ ଇଂରେଜୀ ନାଟ୍ୟକାର ଜର୍ଜ ବାର୍ଣ୍ଣାଡ ଶ' ଲୋକ ଚରିତ୍ରର ଏ ବିଚିତ୍ର ରହସ୍ୟକୁ ଭଲ ଭାବରେ ହୃଦୟଙ୍ଗମ କରିଥିଲେ। ଜୋଆନ୍‌ର ଅଶ୍ରୁଳ ଜୀବନ କାହାଣୀ ତାଙ୍କୁ ଆକର୍ଷିତ କରିଥିଲା, ଜର୍ମାନର ଏ ସତ୍ୟ ଘଟଣାକୁ ଆଧାର କରି ତାଙ୍କର ଚିରାଚରିତ ହାସ୍ୟବ୍ୟଙ୍ଗ ମାଧ୍ୟମରେ ସେ ପରବର୍ତ୍ତୀ ପର୍ଯ୍ୟାୟରେ ଏକ କପୋଳ କଳ୍ପିତ ନାଟ୍ୟ ରୂପ ଦେଲେ। ନାଟ୍ୟ ରୂପଟି ଏହିପରି - ଜୋଆନ୍‌ର ଜୟନ୍ତୀ ପାଳନ ଅବସରାରେ ସମ୍ରାଟ, ପାତ୍ର ମନ୍ତ୍ରୀ ଅଶ୍ରୁ ବିସର୍ଜନ କରିଛନ୍ତି। ଦେଶ ପାଇଁ ପୁଣି ଏକ ଜୋଆନ୍‌ର ଆବଶ୍ୟକତା ଅଛି ବୋଲି କାମନା କରିଛନ୍ତି। ଏପରି ପିରସ୍ଥିତିରେ ହଠାତ୍ ଜୋଆନ୍ ଆକାଶ ମାର୍ଗରେ ଉପସ୍ଥିତ ହୋଇ ନିବେଦନ କରିଛି - 'ଯଦି ପ୍ରକୃତରେ ଆନ୍ତରିକତାର ସହ ଆପଣମାନେ ମୋ ସ୍ଥିତି କାମନା କରୁଛନ୍ତି, ଅନୁମତି ଦେଲେ ମୁଁ ପୁଣି ଆପଣମାନଙ୍କ ଗହଣକୁ ଫେରି ଆସିବି। ଆଉ ଯାହା ଅଧୁରା କାମ ସମ୍ପୂର୍ଣ୍ଣ କରି ଫେରିଯିବି। ଏଥିରେ ସମସ୍ତେ ବ୍ୟସ୍ତ ହୋଇ ପଡ଼ିଛନ୍ତି। ଜୋଆନ୍‌କୁ ଫେରି ନ ଆସିବାକୁ ଅନୁରୋଧ କରିଛନ୍ତି। ପୁନର୍ବାର ସେମାନଙ୍କ ସମ୍ମାନ ଓ ପ୍ରତିଷ୍ଠାରେ ଆଞ୍ଚ ନ ଆଣିବାକୁ ସେମାନେ ନିବେଦନ କରିଛନ୍ତି। ଜୋଆନ୍ ଯେଉଁଠି ଅଛି, ସେହି ସ୍ଥାନ ହିଁ ସମସ୍ତଙ୍କ ପାଇଁ ନିରାପଦ ବୋଲି ସେମାନେ ମତବ୍ୟକ୍ତ କରି ସଭାସ୍ଥଳ ଛାଡ଼ି ପଳାୟନ କରିଛନ୍ତି।

ଏହା କେବଳ ଜର୍ମାନର ଲୋକ ଚରିତ୍ର ନୁହେଁ; ସମଗ୍ର ବିଶ୍ୱରେ ସମ୍ପ୍ରତି

ଏଇଭଳି ଚରିତ୍ର ମାନଙ୍କର ଗହଳିରେ ଆମେ ଅତିଷ୍ଠ ହୋଇ ପଡ଼ିଲୁଣି। ହତାଲାଙ୍ଗୁଳି ଧରି ବୈତରଣୀ ପାର ହେବାଭଳି ମହାତ୍ମାମାନଙ୍କ ନାଁ ନେଇ ସମାଜରେ ପ୍ରତିଷ୍ଠିତ ହେବାର ଯେଉଁ ଘୃଣ୍ୟ ପରମ୍ପରା ଆଉ କେତେ ଦିନ ତିଷ୍ଠି ରହିବ ? ବଞ୍ଚିଥିବା ସମୟରେ ଦେଶ ପ୍ରତି ଯଥେଷ୍ଟ ଅବଦାନ ସତ୍ତ୍ୱେ ଅତ୍ୟନ୍ତ ଦୟନୀୟ ଜୀବନ ଯାପନ କରିଥିବା, ଦୁଃଖ, ଦାରିଦ୍ର୍ୟ ଓ ନୈରାଶ୍ୟ ଭିତରେ ହତୋତ୍ସାହିତ ଜୀବନ ବିତାଇଥିବା ମହାପୁରୁଷମାନଙ୍କ ଅନ୍ତତଃ ସେମାନଙ୍କ ମୃତ୍ୟୁପରେ ଆମେ ଟିକେ ସେମାନଙ୍କ ଅମର ଆତ୍ମାକୁ ଶାନ୍ତି ଦେଇ ପାରିବାନାହିଁ ?

ସେମାନେ ପ୍ରତିଭାଧର। ସେମାନେ ଆମର ନମସ୍ୟ, ସେମାନେ ବନ୍ଦନୀୟ, ସେମାନଙ୍କ ନୀତି ଓ ଆଦର୍ଶ ଆମର ସର୍ବାଦୌ ସ୍ମରଣୀୟ। ତାଙ୍କର ଦିଗ୍‌ଦର୍ଶନରେ ଆମ ଚଲାପଥ ସୁରଭିତ ହେଉ, ସେମାନଙ୍କ ପ୍ରତିମୂର୍ତ୍ତିରେ ଫୁଲମାଳ ଦେବା ସଙ୍ଗେ ସଙ୍ଗେ ତାଙ୍କ ନୀତି ଆଦର୍ଶରେ ଅନୁପ୍ରାଣିତ ହେବା ଆମର ଅଧିକ ଜରୁରୀ। ସେମାନଙ୍କ ଅମର ଆତ୍ମାପ୍ରତି ଶ୍ରଦ୍ଧାଞ୍ଜଳି ଜ୍ଞାପନ କରିବା ଆମର କର୍ତ୍ତବ୍ୟ, କିନ୍ତୁ ଆମେ ନିତ୍ୟ ନୈମିତ୍ତିକ ଜୀବନରେ ସେମାନଙ୍କ ନୀତି ଓ ଆଦର୍ଶକୁ ହତ୍ୟାକରି କେବଳ ସ୍ମୃତି ଦିବସ ମାନଙ୍କରେ ସେମାନଙ୍କର ସ୍ମୃତିକୁ ସଖିକଣ୍ଢେଇ କରି ଆମେ ନିଜକୁ ପ୍ରତିଷ୍ଠିତ କରବାର ଯେଉଁ ଘୃଣ୍ୟ ପ୍ରଚେଷ୍ଟା କରୁଛୁ; ତାହା ଥରେ ହୃଦୟଙ୍ଗମ କଲେ ହୁଅନ୍ତାନି ? କେତେଦିନ ପର୍ଯ୍ୟନ୍ତ ଆମେ ଏ ଅମର ଆତ୍ମାମାନଙ୍କୁ ସନ୍ତାପିତ କରୁଥିବା ? କେବେ ଆମର ସଦ୍‌ବୁଦ୍ଧି ଉଦୟ ହେବ ? ସତରେ କ'ଣ ସେ ସୁଦିନ ଆସିବ ? ପ୍ରତିଭା ମିଶ୍ରିତ ପ୍ରତିମା ପୂଜା କରିବାର ପରମ୍ପରା ଆମେ ସୃଷ୍ଟି କରିବା ? ଭଗବାନ କରନ୍ତୁ ସେ ସୁଦିନ ଆସୁ, ମହାପୁରୁଷ ମାନଙ୍କୁ ସମ୍ମାନ ଦେବାର ମାଧ୍ୟମ ସେମାନଙ୍କ ନୀତି ଓ ଆଦର୍ଶର ଅନୁକରଣ ହେଉ, ଆମ ଫମ୍ପା ବ୍ୟକ୍ତିତ୍ୱର ପ୍ରଦର୍ଶନ ନୁହେଁ। ଏ ପରମ୍ପରା ଲୁପ୍ତ ହେଉ। ଆମର ସଦ୍‌ବୁଦ୍ଧି ଉଦୟ ହେଉ।

ଅନୁପମ ଭାରତ

ଗୁରୁବାର, ୪ ସେପ୍‌ଟେମ୍ବର, ୨୦୦୩

# ପ୍ରତିଭା ଓ ପ୍ରୋତ୍ସାହନ

ମଧ୍ୟଯୁଗର ପ୍ରଚଣ୍ଡ ପ୍ରତିଭାଧର କବି ଭାରବୀଙ୍କ ସମ୍ପର୍କରେ ଏକ ଅଦ୍ଭୁଦ କିମ୍ବଦନ୍ତୀ ଅଛି। ଭାରବୀଙ୍କ ଅପୂର୍ବ ଜ୍ଞାନ ଗାରିମାରେ ଶିକ୍ଷକ, ସହପାଠୀ ଆତ୍ମୀୟ ସ୍ୱଜନ ସମସ୍ତେ ଚମତ୍କୃତ ହେଉଥିଲେ। ସେ ଯେ ଭବିଷ୍ୟତରେ ଜଣେ ଅସାଧାରଣ ପ୍ରତିଭାସମ୍ପନ୍ନ ହେବେ, ଏଥିରେ ସମସ୍ତେ ଏକମତ ଥିଲେ। କିନ୍ତୁ ଜଣେ ବ୍ୟକ୍ତି କିଶୋର ଭାରବୀଙ୍କ କୃତୀକୁ ପ୍ରଶଂସା କରିବାକୁ କୁଣ୍ଠାବୋଧ କରୁଥିଲେ। ସେ ବ୍ୟକ୍ତିଟି ହେଉଛନ୍ତି, ତାଙ୍କ ପିତା। ଭାରବୀଙ୍କୁ କିନ୍ତୁ ଏ କଥାଟି ଆଦୌ ସୁଖକର ମନେ ହେଉନଥାଏ। ବେଳେ ବେଳେ ସେ ବିଦ୍ରୋହୀ ହୋଇ ପଡ଼ନ୍ତି। ତାଙ୍କର ବୁଦ୍ଧିମତୀ ମାଆ ଏସବୁ ଲକ୍ଷ୍ୟ କରନ୍ତି। ଶେଷରେ ଦିନେ ଏଭଳି ପରିସ୍ଥିତି ଉପୁଜିଲା, ଭାରବୀ ପିତାଙ୍କୁ ତାଙ୍କ ଜୀବନରେ ସବୁଠାରୁ ବଡ଼ ଶତ୍ରୁବୋଲି ଭାବିଲେ ଏବଂ ଦିନେ ଛୁରୀଟିଏ ଧରି ପିତାଙ୍କୁ ହତ୍ୟା କରିବେ ବୋଲି ପଲଙ୍କ ତଳେ ଲୁଚି ରହିଲେ। ଯୋଗକୁ ସେଦିନ ପିତା ଶୟନ କକ୍ଷରେ ପ୍ରବେଶ କରିବା ପରେ ମାଆ ପିଲାର କୃତୀତ୍ୱ ସମ୍ପର୍କରେ କିଛି ବର୍ଣ୍ଣନ କରିସାରି ସେ କାହିଁକି ପିଲାର ପ୍ରତିଭାକୁ ସ୍ୱୀକୃତି ଦେଉ ନାହାଁନ୍ତି, ସେ ସମ୍ପର୍କରେ ଅଭିଯୋଗ କଲେ। ପିତା କିନ୍ତୁ ପୁତ୍ରର ବିଦ୍‌ବତ୍ତା ସମ୍ପର୍କରେ ସମ୍ପୂର୍ଣ୍ଣ ସଚେତନ ଥିଲେ। ପିଲାଟିର ମୁହଁରେ ପ୍ରଶଂସା କରିବା ଦ୍ୱାରା କାଳେ ସିଏ ଅହଂର ବଶବର୍ତ୍ତୀ ହୋଇ ସାଧନାରେ ଅବହେଳା ପ୍ରଦର୍ଶନ କରିବ, ତେଣୁ ତାର ପାଣ୍ଡିତ୍ୟକୁ ଅସାଧାରଣ ସ୍ୱୀକାର କରୁଥିଲେ ସୁଦ୍ଧା ମୁହଁରେ ତାକୁ ସେ ସ୍ୱୀକୃତି ଦେଉ ନାହାଁନ୍ତି ବୋଲି ପତ୍ନୀଙ୍କୁ ବୁଝେଇଲେ। ପିତୃ ହତ୍ୟାପାଇଁ ପଲଙ୍କ ତଳେ ଛୁରୀଧରି ଅପେକ୍ଷା କରିଥିବା ଭାରବୀ ପିତାଙ୍କର ଏ ସତ୍ୟାଳାପ ନ ଶୁଣିଥିଲେ କେତେବଡ଼ ଅଘଟଣ କରି ବସିଥାନ୍ତେ ସେ କଥା ଚିନ୍ତା କରିବା ପୂର୍ବରୁ ପିତାଙ୍କର ପାଦଧରି କ୍ଷମା ମାଗିଥିଲେ। ଏ ଉଦାହରଣରୁ ପ୍ରତିଭାଧର ମାନଙ୍କୁ ମୁହଁରେ ପ୍ରଶଂସା ନ କରି ପଛରେ ପ୍ରଶଂସା କରିବା ଉଚିତ ବୋଲି ଯଦି ଆମେ ପ୍ରତିପାଦନ କରିବା, ତା ହେଲେ ଏକ ମସ୍ତବଡ଼ ଭୁଲ କରିବସିବା।

ପ୍ରତିଭା ସର୍ବଦା ପ୍ରୋତ୍ସାହନର ଅପେକ୍ଷା ରଖେ। ସ୍ୱୀକୃତି ନ ପାଇଲେ ସିଏ ହତୋତ୍ସାହିତ ହୋଇ ମଉଳିଯାଏ, ପ୍ରଚାର ଓ ପ୍ରସାର ଅଭାବରୁ କଳାକାରଟିର ନିରଳସ ସାଧନାରେ ବ୍ୟାଘାତ ସୃଷ୍ଟିହୁଏ। ଅଭିମାନରେ ସିଏ ତାର ସମଗ୍ର ସୃଷ୍ଟିକୁ ଧ୍ୱଂସ କରିବାର ଦୃଷ୍ଟାନ୍ତ ରହିଛି। ଏ ସଂପର୍କରେ ସେହି ମଧ୍ୟଯୁଗର ଏକ କିମ୍ବଦନ୍ତୀକୁ ଦୃଷ୍ଟାନ୍ତ ସ୍ୱରୂପ ନିଆଯାଇପାରେ।

ଲୋକ ସଂସ୍କୃତିର ସଂରକ୍ଷଣ କେବଳ ଆଧୁନିକ ବିଚାରଧାରା ନୁହେଁ। ଭାରତର ସର୍ବପ୍ରଥମ ଲୋକକଥା ସଂଗ୍ରାହକ ହେଉଛନ୍ତି 'ଗୁଣାଢ୍ୟ'। ଦୀର୍ଘ ସାତବର୍ଷ କାଳ ସମଗ୍ର ଭାରତ ବର୍ଷ ଭ୍ରମଣ କରି ସାତଲକ୍ଷ ଲୋକ କଥା ସେ ସଂଗ୍ରହ କରିଥିଲେ। ତାଙ୍କ ସମ୍ପର୍କରେ ଯଦି କେବଳ ବାସ୍ତବ ଓ ବିଶ୍ୱାସଯୋଗ୍ୟ ଘଟଣା ରାଶିକୁ ଗ୍ରହଣ କରାଯାଏ, ତାହେଲେ ଏୟା ହେବ ଯେ ସେତେବେଳେ ସମାଜରେ ସଂସ୍କୃତ ଭାଷାର ପ୍ରଚଳନ ବହୁଳ ଭାବରେ ଥିଲା ଓ ଏହାକୁ ଏକ ସମ୍ଭ୍ରାନ୍ତ ରୁଚି ବୋଲି ମଧ୍ୟ ମନେ କରାଯାଉଥିଲା। ଗୁଣାଢ୍ୟ ପୈଶାଚୀ ଭାଷାରେ ଏହି ଲୋକ କଥାଗୁଡ଼ିକ ସଂଗ୍ରହ କରି ତାର ପ୍ରଚାର ଓ ପ୍ରସାର ନିମନ୍ତେ ରାଜାଙ୍କୁ ଅନୁରୋଧ କରିବାରୁ, ରାଜା ତାଙ୍କୁ ତାଚ୍ଛଲ୍ୟ କରି ଫେରାଇ ଦେଇଥିଲେ। ସେତେବେଳେ ଲେଖିବାର ସାମଗ୍ରୀ ଅଭାବ ହେତୁ ସେ ପଶୁଚମଡ଼ାରେ ନିଜ ରକ୍ତ ସାହାଯ୍ୟରେ ଏଗୁଡ଼ିକ ଲିପିବଦ୍ଧ କରିଥିଲେ। ପ୍ରତିଭାଧର କବି ସବୁ ସହିପାରେ, କିନ୍ତୁ ତା ପ୍ରତିଭାର ଅବମାନନା ସେ ଆଦୌ ସହ୍ୟ କରିପାରେ ନାହିଁ। ରାଜାଙ୍କ ଅବଜ୍ଞା ଓ ଅବହେଳା ଗୁଣାଢ୍ୟଙ୍କ ହୃଦୟରେ ଗଭୀର କ୍ଷତ ସୃଷ୍ଟି କଲା। ସେ ଏକ ପାହାଡ଼ ଉପରକୁ ଯାଇ ଅଗ୍ନି ପ୍ରସ୍ତୁତ କଲେ ଓ ସଂଗୃହୀତ ଲୋକ କଥାଗୁଡ଼ିକ ଗୋଟି ଗୋଟି କରି ଉଚ୍ଚ ସ୍ୱରରେ ପଢ଼ି ସେ ସବୁ ଅଗ୍ନିରେ ନିକ୍ଷେପ କରିବାକୁ ଲାଗିଲେ। ୨ ଲକ୍ଷ ଶ୍ଳୋକ ପୋଡ଼ିଯିବା ପରେ ରାଜାଙ୍କ ପାଖରେ ଖବର ପହଞ୍ଚିଲା। ରାଜା ତତ୍‌କ୍ଷଣାତ୍ ଅଭିମାନୀ ଗୁଣାଢ୍ୟଙ୍କ ନିକଟରେ ପହଞ୍ଚି ଅବଶିଷ୍ଟ ଏକ ଲକ୍ଷ ଶ୍ଳୋକ ଉଦ୍ଧାର କଲେ। ପରବର୍ତ୍ତୀକାଳରେ ଏହି ଶ୍ଳୋକ ସମୂହର ସଂକଳନ କରି ତାର ନାମ 'କଥା ସରିତ ସାଗର' ଦେଇଥିଲେ।

ସମଗ୍ର ବିଶ୍ୱର ବିଭିନ୍ନ ଭାଷାରେ ଅନୁଦିତ ଅଗ୍ନିରୁ ଅବଶିଷ୍ଟାଂଶ ଏହି କଥା ସରିତ ସାଗର ବିଶ୍ୱବାସୀଙ୍କୁ ଆକୃଷ୍ଟ କରିଛି। ଭାରତୀୟ ଚିନ୍ତା ଓ ଚେତନାରୁ ଉଦ୍‌ଭୂତ ଛଅଲକ୍ଷ ମୂଲ୍ୟବାନ ଶ୍ଳୋକ ରାଜା ସାତବାହନଙ୍କ ଦୁର୍ବଳ କଳାଜ୍ଞାନ ଓ ଅବିବେକିତା ହେତୁ ନଷ୍ଟ ହୋଇଗଲା। ଭାରତର କୋଣ ଅନୁକୋଣରେ ଏପରି କିଛି କଥା ନାହିଁ, ଯାହାର ମୂଳପ୍ରେରଣା 'କଥା ସରିତ ସାଗର' ରେ ନାହିଁ। ଆମ

ଭାରତୀୟ ପରମ୍ପରାରେ କଳା ଓ ସଂସ୍କୃତିର ସୁରକ୍ଷା ରାଜ ପୃଷ୍ଠପୋଷକତାରେ ହେଉଥିଲା। ରାଜାମାନେ କଳା ଓ ସଂସ୍କୃତିରେ ପାରଙ୍ଗମ ଲାଭ କରିଥିବା ପ୍ରତିଭାଧର ମାନଙ୍କୁ ଉପାଧି, ଉପଢ୍ୌକନ ପ୍ରଦାନ କରି ପ୍ରୋତ୍ସାହନ ଦେଉଥିଲେ। ପୁରସ୍କାର ଓ ପାରିତୋଷିକର ବ୍ୟବସ୍ଥା କରି କଳାସୃଷ୍ଟି ନିରର୍ଥକ ନୁହେଁ ବୋଲି ଆସ୍ଥା ସୃଷ୍ଟି କରୁଥିଲେ। ଯେଉଁଠି ରାଜ ପୃଷ୍ଠପୋଷକତାର ଅଭାବ ଥିଲା ସେଠି ଗୁଣାଢ୍ୟଙ୍କ 'ବୃହତ୍ କଥା' ଭଳି ଅନେକ କାବ୍ୟକୃତି ନଷ୍ଟ ହେଇଯାଉଥିଲା।

ସାମ୍ପ୍ରତିକ ମଣିଷର ଚାହିଦା ଅନୁସାରେ 'ତାର ଭାବଭୂମି ବ୍ୟାପକ ହୋଇପଡ଼ିଛି। ସେହି ଅନୁସାରେ ତାର ଜ୍ଞାନ କୌଶଳର ପରିସୀମା ମଧ୍ୟ ବୃଦ୍ଧି ପାଇଛି। ବ୍ୟକ୍ତିବିଶେଷର ଅନ୍ତର୍ନିହିତ ଯୋଗ୍ୟତମ ଦକ୍ଷତାକୁ ଉନ୍ନତରୁ ଉନ୍ନତତର କରି ସମାଜର ସାମୂହିକ କଲ୍ୟାଣ ଉଦ୍ଦେଶ୍ୟରେ ଉତ୍ସର୍ଗୀକୃତ କରିବାକୁ ହେଲେ ସେମାନଙ୍କୁ ପ୍ରୋତ୍ସାହନ ଦରକାର। ସେ ଛୋଟିଆ ଶିଶୁଟିଏ ହେଉ କି ବୟସ୍କ ବୃଦ୍ଧଟିଏ ହେଉ। ଆଜିର ମନସ୍ତତ୍ତ୍ୱ କହେ, ସମୁଚିତ ପ୍ରେରଣା ମଣିଷକୁ ସଫଳତାର ଶୀର୍ଷ ସୀମାରେ ପହଞ୍ଚାଇଦିଏ। କରତାଳି ଓ ଫୁଲମାଳ ମଣିଷକୁ ଅନ୍ୟପାଇଁ ଜୀବନ ଉତ୍ସର୍ଗ କରିବା ନିମିତ୍ତ ଉନ୍ମାଦନା ଯୋଗାଇଦିଏ। ପ୍ରତିଭାବାନ୍ ବ୍ୟକ୍ତିଟିଏ ତା ପ୍ରତିଭାର ଉପଯୁକ୍ତ ମୂଲ୍ୟାଙ୍କନ ନ ହେଲେ ଅସହାୟବୋଧ କରେ, ଏ କ୍ଷେତ୍ରରେ ସେ ବିଦ୍ରୋହୀ ହୋଇ ସମାଜ ପାଇଁ ଅଭିଶାପପ୍ରବଣ ହୋଇପଡ଼େ ନଚେତ୍ ଆତ୍ମଘାତୀ ହୋଇ ନିଜ ବ୍ୟକ୍ତିତ୍ୱର ଅଜସ୍ର କ୍ଷତି ସାଧନ କରେ।

ଦେବଗୁରୁ ବୃହସ୍ପତିଙ୍କ ଠାରୁ କୌଣସି ଗୁଣରେ ଶୁକ୍ରାଚାର୍ଯ୍ୟଙ୍କର ଦକ୍ଷତା ନ୍ୟୂନ ନଥିଲା, ଅଥଚ ସ୍ୱର୍ଗରେ ବିଭାଗ ବଣ୍ଟନ ସମୟରେ ଶୁକ୍ରାଚାର୍ଯ୍ୟଙ୍କ କାର୍ଯ୍ୟଦକ୍ଷତାକୁ ଉପେକ୍ଷା କରାଯାଇଥିଲା। ଅଭିମାନରେ ଶୁକ୍ରାଚାର୍ଯ୍ୟ ସ୍ୱର୍ଗରାଜ୍ୟରୁ ପଳାୟନ କରି ଅସୁରମାନଙ୍କର ଦିଗ୍‌ଦର୍ଶକ ହେବାପାଇଁ ପ୍ରସ୍ତାବ ଦେଇଥିଲେ। ଅସୁରମାନେ ମଧ୍ୟ ତାଙ୍କୁ ଗୁରୁ ବୋଲି ସ୍ୱୀକାର କରିଥିଲେ। ଦେବତାମାନଙ୍କ ଦ୍ୱାରା ଉପେକ୍ଷିତ ହୋଇଥିବାରୁ ତାଙ୍କର ସମସ୍ତ ଦକ୍ଷତା ସେ କେବଳ ଦେବତା ବିରୋଧୀ କାର୍ଯ୍ୟରେ ନିୟୋଗ କରିଥିଲେ। ଫଳତଃ ଶୁକ୍ରାଚାର୍ଯ୍ୟଙ୍କ ପ୍ରସାଦରୁ ମୃତ ସଞ୍ଜିବନୀ ବିଦ୍ୟା ଓ ଅନ୍ୟ କେତେକ ଦୁର୍ଲଭ ମନ୍ତ୍ର ତନ୍ତ୍ରର ଅଧିକାରୀ ହୋଇ କିପରି ରାକ୍ଷସମାନେ ସଦାସର୍ବଦା ସ୍ୱର୍ଗରାଜ୍ୟରେ ଆତଙ୍କରାଜ ସୃଷ୍ଟି କରୁଥିଲେ, ସେ ସମ୍ପର୍କରେ ଆମେ ସମସ୍ତେ ପରିଚିତ। ପ୍ରଥମରୁ ଶୁକ୍ରାଚାର୍ଯ୍ୟଙ୍କୁ ତାଙ୍କର କାର୍ଯ୍ୟଦକ୍ଷତା ଅନୁସାରେ କାର୍ଯ୍ୟଭାର ମିଳିଯାଇଥିଲେ ବୋଧହୁଏ ଏ ଦେବାସୁର ସଂଗ୍ରାମର ଭୟାବହ ପରିସ୍ଥିତି ସୃଷ୍ଟି ହୋଇନଥାନ୍ତା।

ସମାଜକୁ ଶୃଙ୍ଖଳିତ କରିବା ପାଇଁ ଏଭଳି ରାଶି ରାଶି ଉଦାହରଣ ଥିଲେ ସୁଦ୍ଧା ଆମେ ତାର ବ୍ୟବହାରିକ ଦିଗ ପ୍ରତି ଅବହେଳା ପ୍ରଦର୍ଶନ କରି କେବଳ ମନୋରଂଜନ ପାଇଁ ସେଗୁଡ଼ିକ ପଠନ କରୁଛୁ। ରାଜନୀତିଠାରୁ ରଣନୀତି ପର୍ଯ୍ୟନ୍ତ, ନିତ୍ୟ ପ୍ରାତ୍ୟହିତ ଜୀବନରେ ଆମେ ଯେତେ ସବୁ ବିଦ୍ରୋହ ବିଶୃଙ୍ଖଳା ଦେଖୁ, ସେ ସବୁର ଅଧିକାଂଶ ଜଣକର କାର୍ଯ୍ୟଦକ୍ଷତାକୁ ଆଉ ଜଣଙ୍କର ଅବଜ୍ଞାପୂର୍ଣ୍ଣ ଦୃଷ୍ଟିପାତ ହେତୁ ହିଁ ହେଉଛି। ଦକ୍ଷ ବ୍ୟକ୍ତିର ନିରବ ବିଦ୍ରୋହ ପୁଞ୍ଜିଭୂତ ହୋଇ ପରବର୍ତ୍ତୀ କାଳରେ ଧ୍ୱଂସର ଇସ୍ତାହାର ତୋଳିଦିଏ। ବ୍ୟକ୍ତିର ଯୋଗ୍ୟତମ ଅବଦାନକୁ ସାମୂହିକ କଲ୍ୟାଣ ଉଦ୍ଦେଶ୍ୟରେ କାମନା କରିବା ପୂର୍ବରୁ ତାକୁ କିଛି ପ୍ରୋତ୍ସାହନ ଦରକାର। କିଛି କରତାଳି ଓ ଫୁଲମାଳ ଭିତରେ ତାର କାର୍ଯ୍ୟଦକ୍ଷତା ସମାଜ ପାଇଁ କେତେ ଶ୍ରେୟ ଓ ପ୍ରେୟ ସେ ସମ୍ପର୍କରେ ତାକୁ କିଞ୍ଚିତ୍ ଧାରଣା ଦେଲେ ପ୍ରତିଭାବାନ୍ ବ୍ୟକ୍ତିଟି ନିଃସର୍ତ୍ତରେ ସମାଜ କଲ୍ୟାଣ ପାଇଁ ଆତ୍ମାହୂତି ସୁଦ୍ଧା ଦେଇଦିଏ। ନଚେତ୍ 'ଦିଅଁ ଗଡୁ ଗଡୁ ମାଙ୍କଡ଼' ନ୍ୟାୟରେ ମହତ୍ତର ପ୍ରତିଭାଗୁଡ଼ିକ ଶୁକ୍ରାଚାର୍ଯ୍ୟଙ୍କ ଭଳି ସମାଜ ପାଇଁ ଅପଶକ୍ତି ହୋଇ ପଡ଼ନ୍ତି ଏବଂ ସମାଜର ପ୍ରଭୂତ କ୍ଷତି ସାଧନ କରନ୍ତି।

ଅନୁପମ ଭାରତ

ସୋମବାର, ୨୭ ଅକ୍ଟୋବର, ୨୦୦୩

# ପ୍ରଗତି ଓ ପରଂପରା

ମଣିଷର ଦୈହିକ କ୍ଷୁଧା ଚରିତାର୍ଥ ପରେ ସେ ତାର ସ୍ଥିତିକୁ ବୁଦ୍ଧିମନ୍ତ ଓ ରୁଚିମନ୍ତ କରିବା ପାଇଁ ଯେଉଁ କାର୍ଯ୍ୟ ଅନୁଷ୍ଠାନ ସମ୍ପନ୍ନ କରେ ତାକୁ ସଂସ୍କୃତି କୁହାଯାଏ। ଏହା ଅନେକ ପରିମାଣରେ ଆମର ଭୌଗୋଳିକ ଓ ଅର୍ଥନୈତିକ ସ୍ଥିତି ଦ୍ୱାରା ନିୟନ୍ତ୍ରିତ ହୋଇଥାଏ। ପାରିପାର୍ଶ୍ୱିକ ପରିସ୍ଥିତି, ସେମାନଙ୍କ ଶାରୀରିକ ଓ ମାନସିକ ଆବଶ୍ୟକତାକୁ ଭିତ୍ତି କରି କାଳକ୍ରମେ ଏହା ପରଂପରାରେ ପରିଣତ ହୋଇଯାଏ। ସେଇଥିପାଇଁ ଆମେ ଦେଖୁ ଗୋଟିଏ ଅଞ୍ଚଳର ସଂସ୍କୃତି ଓ ପରଂପରା ଅନ୍ୟ ଅଞ୍ଚଳଠାରୁ ଭିନ୍ନ। କିନ୍ତୁ କାଳକ୍ରମେ ମଣିଷର ଯେତେବେଳେ ଜ୍ଞାନ ଗାରିମାର ପରିସୀମା ବୃଦ୍ଧି ପାଇଲା, ବିଶ୍ୱର ବିରାଟତା ସେ ଅନୁଭବ କଲା ସେତେବେଳେ ତା ସଂସ୍କୃତି ଓ ପରଂପରା ସୀମିତ ପରିବେଶରୁ ବାହାରି ସମଗ୍ର ମାନବ ଜାତିର ସଂସ୍କୃତିକୁ ବକ୍ଷଲଗ୍ନ କଲା। ଫଳତଃ ସଂସ୍କୃତିର ଆଦାନ ପ୍ରଦାନ ହେଲା। ଆଜିର ଇଣ୍ଟରନେଟ୍ ଯୁଗରେ ବୈଦିକ ଯୁଗର ସେହି ଉଦାତ୍ତ ଉଚ୍ଚାରଣ "ବସୁଧୈବ କୁଟୁମ୍ବକମ୍"ର ସହଜ ସମ୍ଭବ ହୋଇପାରିଲା।

ଆଜି ନିଜ ସଂସ୍କୃତିକୁ ଜାବୁଡ଼ି ଧରିବାର, ପରଂପରାକୁ ଅକ୍ଷୁର୍ଣ୍ଣ ରଖିବାର ମୋହ ଆଉ ମଣିଷର ନାହିଁ। ଆମର ଗବାକ୍ଷ ବିଶ୍ୱପାଇଁ ଉନ୍ମୁକ୍ତ ହୋଇପଡ଼ିଛି। ଆମର ସଂସ୍କୃତି ଓ ପରଂପରାକୁ ସେଇ ବାଟଦେଇ ଆମେ ଯେମିତି ବିଶ୍ୱ ପାଖରେ ପହଞ୍ଚେଇ ଦେଇ ପାରିବା ସେମିତି ବିଶ୍ୱ ସଂସ୍କୃତିକୁ ଆମେ ଆମର ଆବଶ୍ୟକତା ଅନୁସାରେ ଗ୍ରହଣ କରିପାରିବା। ଆମ ସଂସ୍କୃତିରେ ଅପସଂସ୍କୃତି ମିଶ୍ରଣ ହୋଇଯିବ ବୋଲି ଆମେ ଯଦି ଯୁଗୀୟ ପ୍ରବାହ ନୂତନତ୍ୱକୁ ସ୍ୱାଗତ ନ କରିବା ବିଶ୍ୱ ଦରବାରରେ ଆମେ ହାସ୍ୟାସ୍ପଦ ହେବା। ବିଶ୍ୱ ସଂସ୍କୃତିକୁ ଆପଣେଇଲେ ଆମ ପ୍ରଗତିର ପଥ ସହଜ ହୋଇ ପଡ଼େ। ଯୁଗଯୁଗ ଧରି ଭିନ୍ନ ଭିନ୍ନ କାଳରେ ଭିନ୍ନ ଭିନ୍ନ ବ୍ୟକ୍ତି ବିଶେଷତଃ ଅଭିଜ୍ଞତା ପ୍ରସୂତ ଏ ସଂସ୍କୃତି ଯେ ସବୁଦିଗରୁ ଆମ ସମାଜ ପାଇଁ କଲ୍ୟାଣ କାରୀ ଏହା ମଧ୍ୟ ଠିକ୍ ନୁହେଁ। ଆମ ପରାଂପରା ଭିତରେ ଏମିତି କିଛି କୁପ୍ରଥା ଓ ଅପସଂସ୍କୃତି ରହିଛି ଯାହା ଗୋବର ଗୋଡ଼ ଭଳି ଆମ ପ୍ରଗତିର ଫସଲକୁ ଦଳି

ଚକଟି ନଷ୍ଟ କରିଦେଉଛି। ଅନ୍ୟକିଛି ଅପସଂସ୍କୃତି ଆମ ପ୍ରଗତିକୁ ପକ୍ଷାଘାତ ରୋଗ ଭଳି ସମ୍ପୂର୍ଣ୍ଣ ଏକ ପାଖିଆ କରି ଦେଉଛି। ଆମ ପରଂପରାରୁ ଆମେ ଯଦି ଏହିସବୁ କୁପ୍ରଥା ଓ ଅନ୍ଧବିଶ୍ୱାସକୁ ତ୍ୟାଗ ନ କରିବା ଆମ ପ୍ରଗତି ପ୍ରତିହତ ହେବ। ଆମ ସମାଜର ଯୌତୁକ ପ୍ରଥା ନାରୀମାନଙ୍କ ପ୍ରତି ପାରମ୍ପରିକ ଦୃଷ୍ଟିକୋଣ ଧର୍ମୀୟ ଭାବନାରେ କେତେକ ରକ୍ଷଣଶୀଳ ମନୋବୃତ୍ତି ରୋଗବୈରାଗ୍ୟ ନିରାକରଣରେ ଗୁଣିଗାରେଡ଼ି ଉପରେ ବିଶ୍ୱାସ ଆଦିକୁ ଉଦାହରଣ ସ୍ୱରୂପ ଗ୍ରହଣ କରାଯାଇପାରେ। ଏଇଠି ପୁଣି ଏକ ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନ ଉଠେ। ଅପସଂସ୍କୃତି ନାଁରେ ଯଦି ଆମ ଜାତିର ମର୍ଯ୍ୟାଦା ବୃଦ୍ଧି କରୁଥିବା, ବିଶ୍ୱ ଦରବାରରେ ଆମକୁ ସ୍ୱତନ୍ତ୍ର ପରିଚୟ ପ୍ରଦାନ କରୁଥିବା ଆମ ସଂସ୍କୃତିର ଚେର କାଟିଦେବା ତାହେଲେ ଆମେ ବିକୃତ ବିକଳାଙ୍ଗ ହେଇ ଫଡ଼ିବା, ଆମର ସ୍ଥିତି ପର୍ଯ୍ୟନ୍ତ ବିପନ୍ନ ହୋଇପଡ଼ିବ। ଆଜିକୁ ଶହେ ବର୍ଷ ତଳେ ଇଂରେଜ ଶିକ୍ଷା ଓ ସଭ୍ୟତାର ସୁଅ ଯେତେବେଳେ ଆମ ସଂସ୍କୃତି ଭିତରକୁ ଧସେଇ ପଶି ଆସିଲା, ନବ୍ୟଶିକ୍ଷିତ ଇଂରେଜୀ ପଢ଼ୁଆ ଯୁବକମାନେ ଆମ ସଂସ୍କୃତିକୁ ଭ୍ରୂକୁଞ୍ଚନ କଲେ, ଏମିତି କିଛି ଆଶଙ୍କା କରି କବି ଗଙ୍ଗାଧର ଲେଖିଥିଲେ -

"ନଖ ବଢ଼ିଥିଲେ କର କରତନ
ମଣ୍ଡିଦିଅ ତହିଁ ଅଳତା ରଙ୍ଗ
ନାକ ବଢ଼ି ଥିଲେ ତା କଲେ ଛେଦନ
ହେବନାହିଁ କି ମୋ ସୌଷ୍ଠବ ଭଙ୍ଗ।"

ଯେଉଁ ସଂସ୍କୃତି ଓ ପରଂପରା କେବଳ ଆମର ବାହ୍ୟ ଆବରଣ ଯାହାକୁ ଧରି ରଖିଲେ ଆମର ପ୍ରଗତି ପରିବର୍ତ୍ତେ ଦୁର୍ଗତିର ରାସ୍ତା ପରିଷ୍କାର ହୋଇଯାଏ, ତାହା ବର୍ଦ୍ଧିତ ନଖ ସଦୃଶ। ତାହାକୁ ତ ପରିତ୍ୟାଗ କରିବାକୁ ହିଁ ପଡ଼ିବ। ବିଲେଇ ବାନ୍ଧି ଶ୍ରାଦ୍ଧ କରିବାର ପରଂପରାକୁ ଆମର ସଂସ୍କୃତି କହି ଭୂଲ୍ କରିବସିଲେ ବିଶ୍ୱ ଦରବାରରେ ଆମେ ହାସ୍ୟାସ୍ପଦ ହେବା। ଠିକ୍ ସେମିତି ଯେଉଁ ସଂସ୍କୃତି ଆମର ଜୀବନ ପଦ୍ଧତି ସହ ସଂପୂର୍ଣ୍ଣ ଏକାତ୍ମ ହୋଇପଡ଼ିଛି, ସେ ଆତ୍ମିକ ଉପଲବ୍ଧିକୁ ଅସ୍ୱୀକାର କଲେ ଆମେ ନିଃସ୍ୱ ଓ ଖଣ୍ଡିତ ବ୍ୟକ୍ତିତ୍ୱ ହୋଇପଡ଼ିବା।

ଆମ ସଂସ୍କୃତିର ଆତ୍ମିକ ଉପଲବ୍ଧି ସହ ବାହ୍ୟ ଆବରଣକୁ ଅନୁଧ୍ୟାନ କରି ସ୍ୱାମୀ ବିବେକାନନ୍ଦ ଥରେ କହିଥିଲେ - ସ୍ନାନ ଶୌଚ ସାରି ଶୁଦ୍ଧପୂତ ହୋଇ ରନ୍ଧନଶାଳାକୁ ଯିବା ଆମର ପରମ୍ପରାର ଏକ ମହତ୍ତ୍ୱପୂର୍ଣ୍ଣ ପ୍ରଥା। ଏହା ଖାଦ୍ୟ ପ୍ରସ୍ତୁତିର ପରିଷ୍କାର ପରିଛନ୍ନତା ରକ୍ଷା କରିବା ସହ ପରିବାରର ସଦସ୍ୟମାନଙ୍କ

ପ୍ରତି ସ୍ନେହ ସମ୍ମାନବୋଧ ଶ୍ରଦ୍ଧା ଓ ଆନ୍ତରିକତା ବୃଦ୍ଧି କରିଥାଏ। କିନ୍ତୁ ସେହି ପବିତ୍ରତା ଓ ପରିଷ୍କାର ପରିଚ୍ଛନ୍ନତା ରକ୍ଷା ହୋଇପାରେ ନାହିଁ ଯେତେବେଳେ ମାଟି ଗୋବର ଲିପା ଚଟାଣ ଉପରେ ଗୋଟିଏ ଥାଳିରେ ଏକାଧିକ ଧୂଳି ଧୂସରିତ ପିଲା ବସି ଆହାର କରନ୍ତି। ଅଥଚ ପାଶ୍ଚାତ୍ୟ ରାଷ୍ଟ୍ରମାନଙ୍କରେ ଖାଦ୍ୟ ପ୍ରସ୍ତୁତକାରୀଙ୍କୁ ଶୁଦ୍ଧପୂତ ହେବା ଆବଶ୍ୟକ ପଡ଼େ ନାହିଁ। ଆମ ପରମ୍ପରାରେ ରୋଷେଇ ଘର ସହ ଚପଲର ଯେଉଁ ଅହିନକୂଳ ସଂପର୍କ, ତାହା ସେମାନଙ୍କର ନାହିଁ କିନ୍ତୁ ସେମାନେ ଭୋଜନ ସମୟରେ ସଂପୂର୍ଣ୍ଣ ପରିଷ୍କାର ପରିଚ୍ଛନ୍ନତା ରକ୍ଷା କରନ୍ତି। ହାତର ଜୀବାଣୁ ଖାଦ୍ୟରେ ମିଶିଯିବ ବୋଲି ସେମାନେ ହାତରେ ସୁଦ୍ଧା ଖାଦ୍ୟ ସ୍ପର୍ଶ କରନ୍ତି ନାହିଁ। କଣ୍ଟା ଚାମଚ, ଛୁରୀ କାଠି ଆଦି ସେମାନଙ୍କର ଖାଦ୍ୟ ଗ୍ରହଣ କରିବାର ମାଧ୍ୟମ। ତେଣୁ ସଂସ୍କୃତିକୁ ଆତ୍ମିକ ଉପଲବ୍ଧି ଭିତରେ କେବଳ ଧରିନେଲେ ହେବନାହିଁ ସଂସ୍କୃତି ଓ ପ୍ରଥାର ଅର୍ଥ ଓ ଉଦ୍ଦେଶ୍ୟ ହୃଦୟଙ୍ଗମ କଲେ ହିଁ ତାହାର ଯଥାଯୋଗ୍ୟ ଉପଯୋଗ ହେଲା ବୋଲି ବୁଝିବାକୁ ହେବ।

କମ୍ପ୍ୟୁଟର ଅନୁଷ୍ଠାନଟିଏ ଉଦ୍‌ଘାଟନ କରିବା ପୂର୍ବରୁ ଆମେ ନଡ଼ିଆ ଭାଙ୍ଗି ଗଣେଶଙ୍କ ଆବାହାନ କରୁ। ଅପରେସନ ଟେବୁଲ୍ ଉପରକୁ ଯିବା ପୂର୍ବରୁ ରୋଗୀର ଆତ୍ମୀୟ ସ୍ୱଜନ ମନ୍ଦିର, ପୂଜାପାଠ ଯଜ୍ଞ ଅନୁଷ୍ଠାନ କରୁ। ଏସବୁ ରହିବ, ଯେତେଦିନ ପର୍ଯ୍ୟନ୍ତ ଆମର ବେଦ, ଉପନିଷଦ, ଗୀତା ଓ ଭାଗବତ ଅଛି ହିନ୍ଦୁ ଧର୍ମ ଜୀବିତ ହୋଇ ରହିଛି, ଏ ପରଂପରାକୁ କେହି କାଟି ଦେଇ ପାରିବେ ନାହିଁ।

ସଂସ୍କୃତି ଓ ପରଂପରା କୌଣସି କାଳରେ ପ୍ରଗତିର ପରିପନ୍ଥୀ ନୁହେଁ। କିନ୍ତୁ ସଂସ୍କୃତି ନାଁରେ ଅପସଂସ୍କୃତି, ପରମ୍ପରା ନାଁରେ ଅନ୍ଧବିଶ୍ୱାସକୁ ପ୍ରଶ୍ରୟ ଦେଲେ ପ୍ରଗତି ପରିବର୍ତ୍ତେ ଆମେ ଦେଶ ଓ ଜାତିପାଇଁ କେବଳ ଦୁର୍ଗତିକୁ ହିଁ ସ୍ୱାଗତ କରି ଆଣିବା ଏଥିରେ ଦ୍ୱିମତର ଅବକାଶ ନାହିଁ।

ଡାବୁଗାଁ, ନବରଙ୍ଗପୁର

# ଆମ ପ୍ରଗତିର ପରିପନ୍ଥୀ 'ବୈରାଗ୍ୟ'

ଭାରତୀୟ ଦର୍ଶନର ମୂଳପିଣ୍ଡ ବୈରାଗ୍ୟ। ବସ୍ତୁବାଦ ପ୍ରତି ନିରାସକ୍ତ, ଭୋଗବିଳାସରେ ବୀତସ୍ପୃହ ଓ ସରଳ ନିରାଡ଼ମ୍ବର ଜୀବନଯାପନ ପଦ୍ଧତି ପ୍ରତି ଭାରତୀୟ ଚିନ୍ତାଧାରାରେ ପ୍ରାଧାନ୍ୟ ଦିଆଯାଏ। ଯାହା ଅଛି, ସେତିକିରେ ଆତ୍ମତୃପ୍ତି ଆମ ଚରିତ୍ରର ବଡ଼ ଭଲଦିଗ ବୋଲି ପରି ଗ୍ରହଣ କରାଯାଏ। ଆୟ ତୁଳନାରେ ଆମେ ବ୍ୟୟକୁ ନିୟନ୍ତ୍ରଣ କରୁ। ବ୍ୟୟ ଅନୁସାରେ ଆୟର ପରିସୀମା ବୃଦ୍ଧି କରିବାର ମାନସିକତା ଆମ ଦେଶରେ କ୍ୱଚିତ୍ ପରିଲକ୍ଷିତ ହୁଏ। କିନ୍ତୁ ପାଶ୍ଚାତ୍ୟ ରାଷ୍ଟ୍ରମାନଙ୍କରେ ସେମାନେ ପ୍ରଥମେ ବ୍ୟୟର ଅଟକଳ କରନ୍ତି, ତଦନୁସାରେ ଆୟର ସୀମା ପରିବର୍ଦ୍ଧନ କରନ୍ତି। ସେହିହେତୁ ସେମାନେ ପରିଶ୍ରମୀ ଓ ଫଳସ୍ୱରୂପ ଐଶ୍ୱର୍ଯ୍ୟ ଓ ପ୍ରାଚୁର୍ଯ୍ୟର ଅଧିକାରୀ। ପ୍ରାପ୍ତିରେ ଅତୃପ୍ତି ସେମାନଙ୍କ ଚାରିତ୍ରିକ ବୈଶିଷ୍ଟ୍ୟ। ଏହି ପ୍ରବୃତ୍ତି ସେମାନଙ୍କୁ ସର୍ବଦା ନୂଆ ନୂଆ ସୃଷ୍ଟି ପାଇଁ ପ୍ରେରଣା ଯୋଗାଇଥାଏ।

ଆମ ଦେଶରେ ଗୋଟିଏ ଶ୍ରେଣୀ ଅଛନ୍ତି, ସେମାନଙ୍କର ଭବିଷ୍ୟତ ଚିନ୍ତା ଆଦୌ ନଥାଏ। ଲଜ୍ଜା ନିବାରଣ ପାଇଁ ଛିଣ୍ଡା କପଡ଼ା ଦୁଇଖଣ୍ଡ, କ୍ଷୁଧା ନିବାରଣ ପାଇଁ ଅନ୍ନ ଦୁଇମୁଠା ଏବଂ ମୁଣ୍ଡ ଗୁଞ୍ଜିବା ପାଇଁ ଝୁପୁଡ଼ି ଘର ଖଣ୍ଡେ ମିଳିଗଲେ ସେମାନେ ଯଥେଷ୍ଟ ହେଲା ବୋଲି ଅନୁଭବ କରନ୍ତି। ଆସନ୍ତା କାଲି ପାଇଁ ଖାଦ୍ୟଦ୍ରବ୍ୟ ଗଛିତ ଥିଲେ ଆଜି ସେମାନେ ନିଶ୍ଚିନ୍ତରେ ଶୋଇପାରନ୍ତି। କଠିନ ପରିଶ୍ରମ କରି ସ୍ୱାଚ୍ଛନ୍ଦ୍ୟ ଜୀବନ ବିତାଇବା ପରିବର୍ତ୍ତେ ଅଳ୍ପ ପରିଶ୍ରମ କରି ନିରାଡମ୍ବର ଜୀବନଯାପନର ଏମାନେ ପକ୍ଷପାତୀ।

ଆମର ଆଧ୍ୟାତ୍ମିକତା ଆମକୁ ସଂଯମ ଶିଖାଏ। ଭାରତୀୟ ଚିନ୍ତନର ଚରମ ଉଦ୍ଦେଶ୍ୟ ବସ୍ତୁବାଦର ଉନ୍ନତି ନୁହେଁ, ପରମ ପଦ ପ୍ରାପ୍ତି ଅର୍ଥାତ୍ ଭଗବତ୍ ଉପଲବ୍ଧି ବା ଆତ୍ମିକ ଉନ୍ନତି ଏହାର ଲକ୍ଷ୍ୟ। ଏହି ଲକ୍ଷ୍ୟସାଧନ ଉଦ୍ଦେଶ୍ୟରେ ଆମକୁ ପ୍ରଥମେ ସାଂସାରିକ ମୋହମାୟା, ପାର୍ଥିବ ସୁଖ ସ୍ୱାଚ୍ଛନ୍ଦ୍ୟ ଓ ବିଳାସ ବ୍ୟସନ ପରିତ୍ୟାଗ କରିବାକୁ ପଡ଼େ। ଜଗତ ମିଥ୍ୟା, ଜୀବନ କ୍ଷଣଭଙ୍ଗୁର, ଜୀବନକୁ ଉପଭୋଗ କରିବା ପାପ, ଏଇଭଳି ଏକ ବିଧିବଦ୍ଧ ଧାରଣା ଆମକୁ ଦିଆଯାଏ।

ପୂଜା ଉପାସନା ଆଦି ବାହ୍ୟ ଧାର୍ମିକ ଅନୁଷ୍ଠାନ ମାନଙ୍କରେ ବହୁ ସମୟ ବ୍ୟୟ କରାଯାଏ। ଏପରିକି କୁମ୍ଭମେଳା ଭଳି ଏକ ଏକ ପର୍ବ ଏକ ବର୍ଷ ପର୍ଯ୍ୟନ୍ତ ପାଳିତ ହୁଏ।

ଭଗବାନଙ୍କୁ ପାଇବାର ପ୍ରଥମ ମାର୍ଗ ହେଉଛି ବୈରାଗ୍ୟର ମାର୍ଗ। ଆମର ପ୍ରାଚୀନ ମୁନିଋଷିମାନେ ଭଗବାନଙ୍କୁ ପାଇବା ଉଦ୍ଦେଶ୍ୟରେ ଗୃହତ୍ୟାଗୀ ହେଉଥିଲେ। ପତ୍ରକୁଡ଼ିଆରେ ରହି, କୌପୁନୀ ପିନ୍ଧି, ବଣ ଫଳମୂଳ ଖାଇ ଜୀବନ ଧାରଣ କରୁଥିଲେ। କୌଣସି କୌଣସି ସମ୍ପ୍ରଦାୟରେ ତ ସମ୍ପୂର୍ଣ୍ଣ ଉଲଗ୍ନ ରହିବା ଅର୍ଦ୍ଧାହାର କରିବା ବିଧି ଓ ପରମ୍ପରା ରହିଛି। ଏବେ ସୁଦ୍ଧା ଯେଉଁ ଧାର୍ମିକ ବ୍ରତ ଅନୁଷ୍ଠାନ ଆମେ କରୁଛୁ, ସେଥିରେ ଉପବାସ ରହି ବିଳାସ ବ୍ୟଞ୍ଜକ କୌଣସି ଦ୍ରବ୍ୟ ବ୍ୟବହାର ନ କରିବାକୁ ନିର୍ଦ୍ଦେଶ ରହିଛି। କେତେକ ଦେବପୀଠରେ ଓ ବ୍ରତ ଅନୁଷ୍ଠାନରେ ପାଦରେ ଚାଲି ଚାଲି ଯାଇ ଦେବଦର୍ଶନ କରିବାକୁ ହୁଏ। କାର୍ତ୍ତିକ ବ୍ରତରେ ଯେତେ ହାଡ଼ଭଙ୍ଗା ଶୀତ ହେଉ ପଛେ ପ୍ରାତଃ ସ୍ନାନ ପରେ ନିଆଁ ପାଖରେ ନ ବସିବା, ବୈଶାଖ ବ୍ରତରେ ବିଞ୍ଚଣା ପବନରେ ବିଞ୍ଚି ନ ହେବା, ପତ୍ରରେ ଖାଇବା ଭୂମିଶୟନ କରବା ଆଦିକୁ ଉଦାହରଣ ସ୍ୱରୂପ ନିଆଯାଇପାରେ। ମୁଖ୍ୟତଃ ଆମେ ଆମ ଜୀବନକୁ ଯେତେ ସଂଯମ ପିଣ୍ଡିତ କରିବା ଆମପାଇଁ ଆଧ୍ୟାତ୍ମିକତାର ମାର୍ଗ ସେତେ ପ୍ରଶସ୍ତ ହୋଇଯିବ ବୋଲି ଆମର ଧାରଣା। ଏହି ଚିନ୍ତାଧାରା ଆମ ଆବଶ୍ୟକତାକୁ ସୀମିତ କରିଦେଇ ଆମକୁ ପରିଶ୍ରମ କାତର କରିଦିଏ। ଧର୍ମ ଧର୍ମ ହୋଇ ଆମେ କର୍ମକୁ ଉପେକ୍ଷା କରୁ। ନିଜ ଜୀବନର ଡୋର ଭାଗ୍ୟ ଓ ଭଗବାନ ହାତରେ ସମର୍ପି ଦେଇ ଆମେ ନିଷ୍କର୍ମା ହୋଇପଡୁ। 'କର୍ମଣ୍ୟେବାଧିକାରସ୍ତେ ମାଫଳେଷୁ କଦାଚନ' - ଗୀତାର ଏ ମହାନ୍ ବାକ୍ୟକୁ ଆମେ ଭୁଲ ପ୍ରୟୋଗ କରୁ। ଅତିଶୟ ଭାଗ୍ୟବାଦୀ ହୋଇପଡ଼ିବାରୁ ଆମ କର୍ତ୍ତବ୍ୟରେ ଆମେ ଅବହେଳା ପ୍ରଦର୍ଶନ କରୁ। ଫଳରେ ସମୃଦ୍ଧି ଆମ ସୀମା ମାଡ଼େ ନାହିଁ। ସ୍ଥିତାବସ୍ଥାରେ ଆମେ ସନ୍ତୁଷ୍ଟ ରହୁ।

ଏହି ଦର୍ଶନର ବିରୋଧାଭାସ କରି ଆମ ସଂସ୍କୃତିରେ ଏକ କ୍ରାନ୍ତିକାରୀ ଚରିତ୍ରର ଦୃଷ୍ଟାନ୍ତ ରହିଛି। ଭୌଗୈଶ୍ୱର୍ଯ୍ୟ ଭିତରେ ରହି ସୁଦ୍ଧା ଆଧ୍ୟାତ୍ମିକ ମାର୍ଗରେ ସର୍ବୋଚ୍ଚ ସ୍ଥାନ ଅଧିକାର କରିଥିବା ରାଜା ଜନକଙ୍କୁ ଶୁକମୁନି ଭଳି ଆଜନ୍ମ ବୈରାଗୀ ଋଷି ଗୁରୁ ରୂପେ ଗ୍ରହଣ କରିଛନ୍ତି। ରାଜଭୋଗର ସକଳ ଐଶ୍ୱର୍ଯ୍ୟ ସହ ସେ ଥିଲେ ମହାଯୋଗୀ। ଐଶ୍ୱର୍ଯ୍ୟ ଓ ପ୍ରାଚୁର୍ଯ୍ୟ କର୍ମଯୋଗୀ ଜନକଙ୍କୁ ଲକ୍ଷ୍ୟରୁ ବିଚ୍ୟୁତ କରିପାରି ନଥିଲା। ସେହି ହେତୁ ତତ୍କାଳୀନ ଆର୍ଯ୍ୟାବର୍ତ୍ତରେ ତାଙ୍କ ରାଜ୍ୟ ଏକ ସମୃଦ୍ଧିଶାଳୀ ରାଜ୍ୟ ରୂପେ ମାନ୍ୟତା ପାଇଥିଲା। ସେ ନିଜେ ଥିଲେ ଜଣେ ଆଦର୍ଶ ରାଜା ଓ ଋଷି। ତାଙ୍କୁ ରାଜର୍ଷି ବୋଲି କୁହାଯାଉଥିଲା। ସେ ଥିଲେ ଶ୍ରେଷ୍ଠ ଗୃହୀ ସନ୍ନ୍ୟାସୀ।

ରାଜା ଜନକଙ୍କ ଜୀବନ ଦର୍ଶନ କିନ୍ତୁ ଭାରତୀୟ ମାନଙ୍କୁ ବେଶି କିଛି ପ୍ରଭାବିତ କଲାଭଳି ଅନୁଭୂତ ହେଲାନାହିଁ। ରାଜା ଜନକଙ୍କ ଭଳି ଆଉ ଏକ ଉଦାହରଣ ଆମେ ଇତିହାସରେ ପାଇଲୁ ନାହିଁ। ଏପରିକି ସ୍ୱୟଂ ଶ୍ରୀକୃଷ୍ଣ ମଧ୍ୟ ଗୀତାରେ ଜନକଙ୍କ ସମକକ୍ଷ ଆଉ ଜଣେ ବ୍ୟକ୍ତିଙ୍କୁ ନପାଇ ଜନକାଦି ଋଷି ବୋଲି କହି ନୀରବ ରହିଛନ୍ତି। ଚେତନାର ଉତ୍ତରଣ ହେଲେ, ଆଧ୍ୟାତ୍ମିକତାରେ ଉନ୍ନତିକାମୀ ହେଲେ ମଣିଷର ବୈରାଗ୍ୟ ଭାବ ଆସେ। କାମିନୀ କାଞ୍ଚନ ତାପାଇଁ ପାପବୋଧ ହୁଅନ୍ତି। ସେ ଗୃହ ତ୍ୟାଗ କରେ। ଏକ ବସ୍ତ୍ର ହୋଇ ପତ୍ର କୁଡ଼ିଆରେ ରହେ। ଭିକ୍ଷାବୃତ୍ତି କରି ବଞ୍ଚେ। ତେବେ ଏଇଠି ପ୍ରଶ୍ନ ଉଠେ, ନିରାଡ଼ମ୍ବର ଜୀବନ ବିତାଇବା, ଅଭାବ ଅନାଟନ ଭିତରେ ରହିବା ଦ୍ୱାରା ଯଦି ଆଧ୍ୟାତ୍ମିକତାର ମାର୍ଗ ପ୍ରଶସ୍ତ ହୁଏ, ତେବେ ଆମ ଦେଶର କୋଟି କୋଟି ନିରନ୍ନ ଜନତା ଶୀଘ୍ର ସେ କ୍ଷେତ୍ରରେ ସଫଳତା ପ୍ରାପ୍ତି ହୁଅନ୍ତେ। ଆମ ଦେଶରେ ଆଉ ଦୁଃଖ ରହନ୍ତା ନାହିଁ।

ବିଶ୍ୱ ସମୁଦାୟ ନୂତନ ଜ୍ଞାନ କୌଶଳର ପ୍ରୟୋଗରେ ଶିଳ୍ପ ବାଣିଜ୍ୟ ବିଜ୍ଞାନର ଚରମ ଉନ୍ନତି ସାଧନ କରି, ଜୀବନଧାରଣର ମାନ ଉନ୍ନତ କରିବାରେ ନିଜର ସକଳ ସାମର୍ଥ୍ୟ ପ୍ରୟୋଗ କରୁଥିବା ବେଳେ ଆମେ ଆଧ୍ୟାତ୍ମବାଦୀମାନେ ପୁରୁଣା ଚିନ୍ତାଧାରାକୁ ଛାଡ଼ିପାରୁନାହାଁନ୍ତି। ଆଖି ଝଲସା ବିଜୁଳି ଆଲୁଅରେ ମନ୍ଦିରର ଗର୍ଭଗୃହରେ ଦିବାରାତ୍ର ବାରି ହେଉ ନଥିଲେ ସୁଦ୍ଧା ମନ୍ଦିର ଭିତରେ ଦିଅଁଙ୍କୁ ଦୀପଟିଏ ଦାନ ନକଲେ ଆମର ତୃପ୍ତି ଆସୁନାହିଁ। ଯଦିଓ ଏହି ମନ୍ଦିର ଗୁଡ଼ିକର ଅବକ୍ଷୟ ମୂଳରେ ବିଭିନ୍ନ କାରଣ ଭିତରୁ ଦୀପଦାନ ଜନିତ ଧୂଆଁ ଅନ୍ୟତମ କାରଣ ବୋଲି ସାବ୍ୟସ୍ତ ହୋଇ ସାରିଲାଣି। ଆଗକାଳରେ ବିଜୁଳି ଆଲୁଅର ପ୍ରଚଳନ ନଥିବାରୁ ମନ୍ଦିର ଭିତରେ ଅନ୍ଧକାର ପରିପୂର୍ଣ୍ଣ ରହୁଥିଲା। ତେଣୁ ଘିଅଦୀପଟିଏ ଦେଇ ଦେବଦର୍ଶନ କରିବାକୁ ପଡ଼ୁଥିଲା। ଏବେ କିନ୍ତୁ ପରିସ୍ଥିତି ବଦଳି ଯାଇଥିଲେ ସୁଦ୍ଧା ଆମ ମାନସିକତାରେ ସେମିତି କିଛି ପରିବର୍ତ୍ତନ ହୋଇନାହିଁ। ଢ଼େଙ୍କିକୁଟା ଚାଉଳ, ଚକିପେଶା ଅଟାରେ ଆମ ଠାକୁରଙ୍କ ପାଇଁ ପ୍ରସାଦର ବ୍ୟବସ୍ଥା ହୁଏ। ଆଧୁନିକ ଜ୍ଞାନକୌଶଳ ସମ୍ଭୂତ ଦ୍ରବ୍ୟ ଆମ ଦିଅଙ୍କ ପାଖ ପଶେ ନାହିଁ। ଏସବୁ ଚିନ୍ତାଧାରା ଯେ ଆମ ପ୍ରଗତିକୁ ପରୋକ୍ଷ ଭାବରେ ନିରୁତ୍ସାହିତ କରୁଛି ଏଥିରେ ସନ୍ଦେହ ନାହିଁ। ଆମର ଆଧ୍ୟାତ୍ମିକ ପିପାସା ଚରିତାର୍ଥ କରିବା ପାଇଁ ଆମେ ବାରମାସରେ ତେରପର୍ବ ପାଳନ କରୁ। ପ୍ରତ୍ୟେକ ପୂଜାପର୍ବରେ କିଛି ନା କିଛି ଧାର୍ମିକ ପୃଷ୍ଠଭୂମି ରହିଥାଏ। ବର୍ଷର ଅଧିକାଂଶ ସମୟ ପୂଜା ଉପାସନାରେ କଟେ। ଅଥଚ ବିକଶିତ ରାଷ୍ଟ୍ରମାନଙ୍କରେ ଧାର୍ମିକ ଅନୁଷ୍ଠାନ ପାଇଁ, ଏତେ ସମୟ ବ୍ୟୟ କରନ୍ତି ନାହିଁ। ସେ ଦେଶମାନଙ୍କରେ ଯେ ଲୋକମାନେ ନାସ୍ତିକ, ସେମାନଙ୍କର ଆଧ୍ୟାତ୍ମିକ ଚିନ୍ତନ ନାହିଁ,

ଏପରି କଥା ଭୁଲ୍। ଅସଲ କଥା ହେଲା ସେମାନେ ଜୀବନ ସହ ଧର୍ମକୁ ଜଡ଼ିତ କରି ଦିଅନ୍ତି ନାହିଁ। ଆତ୍ମା... ଆତ୍ମା ହୋଇ ଦେହକୁ ଉପେକ୍ଷା କରନ୍ତି ନାହିଁ। 'ଅନ୍ନ ବିହୁନେ ଦେହ ହାନୀ, ଯୋଗ ସାଧିବୁ କାହା ଘେନି' ଭଳି ଅନେକ ନୀତି ବାଣୀରେ ଦେହର ପ୍ରାଧାନ୍ୟ ଦିଆଯାଇଥିଲେ ସୁଦ୍ଧା ଦୈହିକ ଉନ୍ନତି ପାଇଁ ସଦା ଜାଗ୍ରତ ହୋଇଥିବା ବ୍ୟକ୍ତି ମାନଙ୍କୁ ଆମ ସମାଜରେ ଭଲ ଦୃଷ୍ଟିରେ ଦେଖାଯାଏ ନାହିଁ। ବାସ୍ତବ ସତ୍ୟ (ଇହକାଳ)କୁ ଛାଡ଼ି ଏକ କାଳ୍ପନିକ ସତ୍ୟ (ପରକାଳ) ପଛରେ ଆମେ ଧାଉଁ। ଫଳତଃ ଦାରିଦ୍ର୍ୟ ଆମ ପିଛା ଛାଡ଼େ ନାହିଁ। ପ୍ରଗତିର ପଥ ଅବରୁଦ୍ଧ ହୋଇପଡ଼େ।

ଆମ ଦେଶରେ ପ୍ରତିଭାର ଅଭାବ ନାହିଁ। ସେମାନଙ୍କୁ ଉପଯୁକ୍ତ ସୁବିଧା ସୁଯୋଗ ଦେଲେ, ସେମାନଙ୍କ କର୍ମର ଦକ୍ଷତାକୁ ସ୍ୱୀକୃତି ମିଳିଲେ, ସେମାନଙ୍କ କ୍ଷେତ୍ର ପରିସର ବୃଦ୍ଧି ହେଲେ ସେମାନେ ଆମ ଦେଶ ଛାଡ଼ି ଅନ୍ୟଦେଶକୁ କର୍ମକ୍ଷେତ୍ର ରୂପେ ଗ୍ରହଣ କରନ୍ତେ ନାହିଁ। ସେମାନଙ୍କ କାର୍ଯ୍ୟ ଦକ୍ଷତାରେ ଆମ ଦେଶ ସମୃଦ୍ଧ ହୁଅନ୍ତା। ଅନ୍ୟ ଦେଶର ନାଗରିକତ୍ୱ ଗ୍ରହଣ କରି ବୈଜ୍ଞାନିକ ମାନେ ନୋବେଲ୍ ପୁରସ୍କାର ପାଆନ୍ତେ ନାହିଁ। ଆମ ଦେଶର ରୋଗୀ ଆମରି ଡାକ୍ତରଙ୍କ ହାତରେ ଚିକିତ୍ସିତ ହେବା ପାଇଁ ଆମେରିକା ପର୍ଯ୍ୟନ୍ତ ଦୌଡ଼ି ଯା'ନ୍ତେ ନାହିଁ। କଳ୍ପନା ଚାଓଲାଙ୍କୁ ନିଜ କଳ୍ପନାର ବାସ୍ତବ ରୂପାୟନ ପାଇଁ ଆଉ ଗୋଟିଏ ରାଷ୍ଟ୍ରର ସାହାରା ନେବାକୁ ହୋଇନଥା'ନ୍ତା।

ତଥାପି ଆମେ ନିଜକୁ ଦରିଦ୍ର ପଛୁଆ ରାଷ୍ଟ୍ର କହିବାକୁ ପ୍ରସ୍ତୁତ ନୋହୁଁ। ଅନ୍ୟ ଦେଶ ଅପେକ୍ଷା ନିଜକୁ ଆଗୁଆ ଦେଖାଇବାର ପ୍ରବୃତ୍ତି ଚରିତାର୍ଥ କରିବାକୁ ଯାଇ କେତେ ଢ଼ଙ୍ଗରେ କେତେ ଶୈଳୀରେ, କେତେ ଚତୁରତାର ସହ ଆମେ ଆମର ବଡ଼ପଣ ସେମାନଙ୍କ ପାଖରେ ଉପସ୍ଥାପନା କରୁ। ଭାରତକୁ ବିଶ୍ୱର ଯଜ୍ଞକୁଣ୍ଡ ବୋଲି ସାବ୍ୟସ୍ତ କରୁ। ଆତ୍ମାର ପ୍ରଗତି ପାଇଁ ଚିନ୍ତିତ ଥିବା ଆଧ୍ୟାତ୍ମିକ ସମୃଦ୍ଧି କ୍ଷେତ୍ରରେ ଆମେ ବିଶ୍ୱରେ ଅଗ୍ରଣୀ ବୋଲି ବାହାସ୍ଫୋଟ ମାରୁ। ଆମ ଧର୍ମକୁ ଶ୍ରେଷ୍ଠ ଧର୍ମ କହି ନିଜେ ହିଁ ଧର୍ମ ବିରୋଧୀ ହୋଇଥାଉଁ। ଆମେ ବିଶ୍ୱକୁ ତ୍ୟାଗ ଓ ବୈରାଗ୍ୟର ଦୀକ୍ଷା ଦେଉଛୁ ବୋଲି ଆତ୍ମସନ୍ତୋଷ ଅନୁଭବ କରୁ। କିନ୍ତୁ ଯେଉଁ ଚିନ୍ତାଧାରା ମଣିଷର ଶାରୀରିକ, ମାନସିକ ଓ ବୌଦ୍ଧିକ କ୍ଷୁଧାକୁ ଚରିତାର୍ଥ କରିବାକୁ ସମର୍ଥ ନୁହେଁ, ତାହା ଯେତେ ଜ୍ଞାନ ଗର୍ଭକ, ଉନ୍ନତ ଓ ଆଭିଜାତ୍ୟ ସମ୍ପନ୍ନ ହେଲେ ସୁଦ୍ଧା ତାହା ଯେ, ମଣିଷ ଜାତିର କୌଣସି କଲ୍ୟାଣରେ ଆସିବ ନାହିଁ ବରଂ ଦେଶର ପ୍ରଗତିରେ ପ୍ରତିବନ୍ଧକ ହୋଇ ଠିଆ ହେବ, ଏହା ଅସ୍ୱୀକାର କରିହେବ ନାହିଁ।

ଅନୁପମ ଭାରତ

୨୨ ସେପ୍ଟେମ୍ବର, ୨୦୦୪

# ପ୍ରବୃତ୍ତି ଓ ନିବୃତ୍ତିର ନିଗଡ଼ରେ କାର୍ତ୍ତିକ ବ୍ରତ

ପ୍ରବୃତ୍ତି ମଣିଷର ସହଜାତ। କିନ୍ତୁ ସଂସ୍କାରରୁ ସୃଷ୍ଟି ହୁଏ ନିବୃତ୍ତି। ଶିଶୁଟିଏ ଭୂମିଷ୍ଠ ହେବା ପରଠାରୁ ଆହାର, ନିଦ୍ରା, ଭୟ, ମୈଥୁନ ଆଦି ପ୍ରାଣୀ ସୁଲଭ ପ୍ରବୃତ୍ତି ତାକୁ ଆବୋରି ରହିଥାଏ। ତାର ଶିକ୍ଷା, ଦୀକ୍ଷା, ସଂସ୍କାର ଓ ପାରିପାର୍ଶ୍ୱିକ ପରିସ୍ଥିତି ଏହି ପ୍ରବୃତ୍ତିକୁ ନିୟନ୍ତ୍ରିତ କରେ, ଶୃଙ୍ଖଳିତ କରେ। ଇତର ପ୍ରାଣୀମାନେ ତ ଆଦୌ ଏ ପ୍ରବୃତ୍ତିକୁ ନିୟନ୍ତ୍ରିତ କରନ୍ତି ନାହିଁ। ସେମାନଙ୍କ ଜୀବନ ଧାରଣ ପ୍ରଣାଳୀ ସହଜାତ ଓ ସ୍ୱଭାବ ସୁଲଭ। ଯେଉଁଠି ଏଥିରେ ବ୍ୟତିକ୍ରମ ଘଟେ ତାହା କେବଳ ମଣିଷର ତାଡ଼ନା ଯୋଗୁ ହିଁ ହୋଇଥାଏ। ମଣିଷ ସେମାନଙ୍କୁ ପାଳି ପୋଷି ଭିନ୍ନ ରୂପରେ ବଞ୍ଚିବା ପାଇଁ ଚାପ ପ୍ରୟୋଗ କରନ୍ତି। ସେହି ଚାପ ଫଳରେ ହୁଏ ତ କିଛି ସମୟ ପାଇଁ ସେମାନେ ଭିନ୍ନ ଧରଣର ଜୀବନ ବଞ୍ଚନ୍ତି କିନ୍ତୁ ମୁକ୍ତ ହୋଇଗଲେ ପୁଣି ସେମାନଙ୍କ ଚିରାଚରିତ ଜୀବନଧାରଣ ପଦ୍ଧତିକୁ ଫେରିଯାଆନ୍ତି।

କିନ୍ତୁ ମାନବ କ୍ଷେତ୍ରରେ ଏହା ସମ୍ପୂର୍ଣ୍ଣ ଅଲଗା। ମଣିଷ ପାଇଁ ପ୍ରବୃତ୍ତି ମାର୍ଗ ଓ ନିବୃତ୍ତି ମାର୍ଗ ଦୁଇଟି ଯାକ ପ୍ରଶସ୍ତ। ଇଚ୍ଛା ଓ ରୁଚି ଅନୁସାରେ ସେ ଗୋଟିଏ ପଥ ନିର୍ବାଚନ କରେ, ବେଳେ ବେଳେ ସାମାଜିକ ଶୃଙ୍ଖଳା ଏଗୁଡ଼ିକୁ ବେଶ୍ ପ୍ରଭାବିତ କଲାଭଳି ଅନୁଭୂତ ହୁଏ। ଏହି ପ୍ରବୃତ୍ତି କିମ୍ବା ନିବୃତ୍ତି ମାର୍ଗ ଯଦି ବ୍ୟକ୍ତିଗତ ପରିସୀମା ଅତିକ୍ରମ କରି ଅପରକୁ ପ୍ରଭାବିତ କରେ ତାହେଲେ ପ୍ରତିକ୍ରିୟା ତ ନିଶ୍ଚୟ ହେବ। ତେବେ ପ୍ରବୃତ୍ତି ହେଉ କି ନିବୃତ୍ତି ହେଉ ମଣିଷ ଏହି ମାର୍ଗ ପ୍ରତି କେତେଦୂର ଆନ୍ତରିକତା ପ୍ରଦର୍ଶନ କରିପାରୁଛି ତାହିଁ ହିଁ ବଡ଼କଥା।

ଇତିହାସରେ ଥିଲେ ଏମିତି ଜଣେ ବ୍ୟକ୍ତି ତାଙ୍କୁ ଚାର୍ବାକ୍ ବୋଲି କୁହାଯାଉଥିଲା। ଚାର୍ବାକ୍ ଅର୍ଥାତ୍ ଚାରୁ ବାକ୍। ତାଙ୍କର କଥା ଲୋକଙ୍କୁ ଭଲ ଲାଗୁଥିଲା। ତେଣୁ ଲୋକେ ତାଙ୍କୁ ଏହି ନାମରେ ନାମିତ କରିଥିଲେ। ଇନ୍ଦ୍ରିୟ ସର୍ବସ୍ୱ ଥିଲା ତାଙ୍କ ତତ୍ତ୍ୱ। ଜୀବନର ଲକ୍ଷ୍ୟ କେବଳ ସୁଖଭୋଗ ବୋଲି ସେ କହୁଥିଲେ। ଦେହକୁ ଆଶ୍ରୟ କରି ତାଙ୍କର ଦର୍ଶନ। ଇନ୍ଦ୍ରିୟର ପରିତୃପ୍ତି ତାଙ୍କର ଉଦ୍ଦେଶ୍ୟ ଥିଲା

ସେହି ହେତୁ ସେ କହୁଥିଲେ -

'ଯାବତ୍ ଜୀବେତ୍ ସୁଖମ୍ ଜୀବେତ୍
ଋଣଂ କୃତ୍ୱା ଘୃତଂ ପିବେତ୍
ଭସ୍ମୀଭୂତସ୍ୟ ଦେହସ୍ୟ
ପୁନରାଗମନଂ କୁତଃ।'

ଅବଶ୍ୟ ତାଙ୍କର ଏ ମାର୍ଗଦର୍ଶନ ଆଧ୍ୟାତ୍ମିକତାର ପରିପନ୍ଥୀ ଥିଲା। ତାଙ୍କୁ ନାସ୍ତିକ ବୋଲି କହି ଆମ ଧର୍ମ ଯାଜକମାନେ ଭ୍ରୂକୁଞ୍ଚନ କରୁଥିଲେ। ତଥାପି ସେ ଲୋକପ୍ରିୟତା ହାସଲ କରିଥିଲେ। ତାଙ୍କର ନିର୍ଭୀକ ବ୍ୟକ୍ତିତ୍ୱ, ସ୍ପଷ୍ଟବାଦିତା ଓ ଛଳନାହୀନ ବକ୍ତବ୍ୟ ଅନେକଙ୍କୁ ଆକୃଷ୍ଟ କରିଥିଲା। ଇନ୍ଦ୍ରିୟ ପରିତୃପ୍ତ ତାଙ୍କ ପାଇଁ ଲଜ୍ଜାଜନକ କିମ୍ବା ପାପାଚାର ବ୍ୟାପାର ନଥିଲା। ମଧ୍ୟଯୁଗରେ ତାଙ୍କର ଏ ଦର୍ଶନ କିଛିଦିନ ପାଇଁ ସମାଜରେ ଗଭୀର ଆଲୋଡ଼ନ ସୃଷ୍ଟି କରିଥିଲା।

କିନ୍ତୁ ସାମ୍ପ୍ରତିକ ମଣିଷ ଏମିତି ଗୋଟିଏ ଦୋଦୁଲ୍ୟମାନ ମାନସିକତା ଭିତରେ ଗତି କରୁଛି ଯେ, ସେ ଯାହା ଆଚରଣ କରୁଛି, ସେଥିରେ ତାର ସମ୍ପୂର୍ଣ୍ଣ ଆସ୍ଥା କିମ୍ବା ଆନ୍ତରିକତା ନାହିଁ। ସେହି ହେତୁ ସେ କାର୍ଯ୍ୟ କରୁଛି ଗୋଟିଏ ଓ ଫଳ ଫଳୁଛି ଅନ୍ୟପ୍ରକାର। ଯଥାକ୍ରମେ ପ୍ରବୃତ୍ତି ଓ ନିବୃତ୍ତିର ପରିପୋଷକ ଦୁଇବନ୍ଧୁ ଥିଲେ। ଦୁହେଁ ଦୁହିଙ୍କ ଲକ୍ଷ୍ୟସ୍ଥଳ ସ୍ଥିର କଲେ। ଜଣେ ଗଲା ଗଣିକାଳୟ ଓ ଅନ୍ୟ ଜଣେ ଗଲା ଦେବାଳୟ। ଗଣିକାଳୟ ଯାଇ ଇନ୍ଦ୍ରିୟ ସୁଖ ଅନୁଭବ କରୁଥିଲା ବେଳେ ଲୋକଟି ଚେତନା ଭିତରେ ଅନୁଭବ କରୁଥିଲେ - 'ଆଃ - ମୁଁ କେଡ଼େ ପାପୀଷ୍ଠ! ତୁଚ୍ଛା ଇନ୍ଦ୍ରିୟ ଲାଳସା ଦମନ କରିନପାରି ମୁଁ କେତେବଡ଼ ଅନୀତି କାର୍ଯ୍ୟକରୁଛି। ରୌରବ ନର୍କ ହିଁ ମୋ ପାଇଁ ଉପଯୁକ୍ତ। ମୋ ବନ୍ଧୁ କି ଆନନ୍ଦରେ ଦେବାଳୟରେ ଦେବଦର୍ଶନ କରି ପ୍ରବଚନ ଶୁଣୁଥିବ, ଭଜନ କୀର୍ତ୍ତନ କରି ଦିବ୍ୟ ଆନନ୍ଦ ଅନୁଭବ କରୁଥିବ ! ଏହି କଥା ଚିନ୍ତାକରି ଲୋକଟି ଇନ୍ଦ୍ରିୟଲାଳସା ଚରିତାର୍ଥ କରିବାକୁ ଆସିଥିଲେ ସୁଦ୍ଧା ସୁଖ ଅନୁଭବଟା ଭଲ ଭାବରେ କରିପାରୁ ନଥିଲା।

ଅପର ବନ୍ଧୁଟି ଦେବଦର୍ଶନ ସାରି ସାଧୁ ମହାରାଜାଙ୍କ ପ୍ରବଚନକୁ ଅନ୍ୟ ମନସ୍କ ହୋଇ ଶୁଣୁଥିବା ବେଳେ ନିଦୁଆ ଆଖିରେ ଭଜନ କୀର୍ତ୍ତନରେ ସାମିଲ୍ ହେଲାବେଳେ ଭାବୁଥିଲା - 'ଆଃ-ମୁଁ କେତେ ନିର୍ବୋଧ ସତେ। ମୋ ବନ୍ଧୁ ସୁନ୍ଦରୀ ନାରୀ କଣ୍ଠ ନିଃସୃତ ମଧୁର ସ୍ୱର ଝଙ୍କାରରେ ଅଭିଭୂତ ହୋଇ ସୁଖାଦ୍ୟ ଭୋଜନ

ପୂର୍ବକ ସୁନ୍ଦରୀ ରମଣୀର ସାନ୍ନିଧ୍ୟ ହାସଲ କରୁଥିବା ବେଳେ ମୁଁ ଏଠି ଶୁଷ୍କ ପ୍ରବଚନ ଶୁଣି ନିରସ ଭଜନ କୀର୍ତ୍ତନରେ ବୁଡ଼ି ରହୁଛି କେଡ଼େ ଭାଗ୍ୟବାନ୍ ମୋ ବନ୍ଧୁଟି।' ଯଥା ସମୟରେ ଦୁହେଁ ଦୁହିଁଙ୍କ ସ୍ଥାନରୁ ଫେରି ଆସିଲେ ଓ ନିର୍ଦ୍ଧାରିତ ସ୍ଥାନରେ ଭେଟ ହେଲେ। ଦୁହେଁ ଦିଶୁଥିଲେ ଚିନ୍ତିତ ଓ କ୍ଳାନ୍ତ। ମୃତ୍ୟୁ ପରେ ଯେତେବେଳେ ଏ ଦୁହିଁଙ୍କ କର୍ମଫଳର ବିଚାର ହୁଏ ଫଳସ୍ୱରୂପ ଗଣିକାଳୟ ଯାଇଥିବା ବ୍ୟକ୍ତି ଜଣକ ସ୍ୱର୍ଗରେ ସ୍ଥାନ ପାଇଥିବା ବେଳେ ଦେବାଳୟ ଯାଉଥିବା ବ୍ୟକ୍ତିଟି ପାଇଁ ନର୍କ ନିର୍ଦ୍ଧାରିତ ଥିଲା। ଏ ଫଳରେ ବିପରୀତ କାହିଁକି ହେଲା ତାର ତର୍ଜମା କରିବାର ଆବଶ୍ୟକତା ବୋଧହୁଏ ନାହିଁ। ଆଜି ଆମର ଚିନ୍ତା ଓ ଚେତନା ଏମିତି ଏକ ପରିସ୍ଥିତିରେ ଉପନୀତ ହୋଇଛି, ଏମିତି ଗୋଟିଏ ମାନସିକତା ଆମ କାର୍ତ୍ତିକ ମାସର ସକଳ ମହାତ୍ମ୍ୟକୁ ନଷ୍ଟ କରୁଛି। କାର୍ତ୍ତିକ ମାସକୁ ଧର୍ମମାସ ବୋଲି ଗ୍ରହଣ କରାଯାଇଛି। ସାଂସାରିକ ମାୟା ଜଞ୍ଜାଳରେ ଅଣନିଃଶ୍ୱାସୀ ହେଉଥିବା ସଂସାରୀମାନେ ଏ ମାସକୁ ଅତ୍ୟନ୍ତ ଶୁଦ୍ଧପୂତ ଭାବରେ ପାଳନ କରନ୍ତି। ପ୍ରାତଃ ସ୍ନାନ ସାରି ପବିତ୍ର ମନରେ ଦେବଦର୍ଶନ, ଦାନ, ଧ୍ୟାନ, ଧର୍ମଶାସ୍ତ୍ର ଅଧ୍ୟୟନ ଓ ଚର୍ଚ୍ଚା ସାତ୍ତ୍ୱିକ ଆହାର କୌଣସିଟି ବାଦ ପଡ଼େ ନାହିଁ। ଏ ମାସର ଶେଷ ପାଞ୍ଚଦିନକୁ 'ପଞ୍ଚକ' କୁହାଯାଏ। ଏ ସମୟରେ ଚିଲବଗ ସୁଦ୍ଧା ଆମିଷ ଭକ୍ଷଣ କରନ୍ତି ନାହିଁ ବୋଲି ବିଶ୍ୱାସ କରାଯାଏ। ସେହି ହେତୁ ଏହାକୁ 'ବକ ପଞ୍ଚମୀ' ବୋଲି ମଧ୍ୟ କୁହାଯାଏ।

ବର୍ଷକରେ ଗୋଟିଏ ମାସ ହେଉ ପଛେ, ଏ ମାସଟି ମଣିଷ ଜୀବନକୁ ବହୁଭାବରେ ପ୍ରଭାବିତ କରିଥାଏ। ବ୍ୟକ୍ତି ଅନ୍ତରରେ ଆଧ୍ୟାତ୍ମିକ ଚିନ୍ତନକୁ ଉଜ୍ଜୀବିତ କରି ରଖିବାରେ ଏ ମାସଟି ଯଥେଷ୍ଟ ସାହାଯ୍ୟ କରିଥାଏ। ଏ ମାସରେ ଲୋକେ ପ୍ରବୃତ୍ତି ଦ୍ୱାରା ପରିଚାଳିତ ନ ହୋଇ ନିବୃତ୍ତି ମାର୍ଗରେ ସଂଯମ ପିଣ୍ଡିତ ଜୀବନଯାପନ କରିଥାନ୍ତି। କିନ୍ତୁ ଏଇଠି ପ୍ରଶ୍ନ ଉଠେ, ଆମେ କେତେଦୂର ଏଇ ମାର୍ଗ ପ୍ରତି ଆନ୍ତରିକତା ପ୍ରଦର୍ଶନ କରୁ, କେତେ ବିଶ୍ୱସ୍ତ ରହୁ ? ଅନେକ କ୍ଷେତ୍ରରେ ପରିଲକ୍ଷିତ ହୁଏ ଏଇ ମାସଟିକୁ ଯେହେତୁ ନିବୃତ୍ତିର କଠୋର ଅନୁଶାସନ ଭିତରେ ପାଳନ କରିବାକୁ ହୁଏ। ଏ ମାସର ଆୟମାରମ୍ଭର ଠିକ୍ ଅବ୍ୟବହିତ ପୂର୍ବରୁ ପ୍ରବୃତ୍ତିର ମାର୍ଗଟାକୁ ବେଶ୍ କିଛି ପ୍ରଶସ୍ତ କରାଯାଏ। ଏକମାସ ପର୍ଯ୍ୟନ୍ତ ଆମିଷ ଭକ୍ଷଣ ନିଷେଧ ଥିବାରୁ କାର୍ତ୍ତିକ ବ୍ରତର ଆରମ୍ଭ ପୂର୍ବଦିନ ଆକଣ୍ଠ ଆମିଷ ଭୋଜନ କରାଯାଏ। ସେଦିନ ଆବଶ୍ୟକତା ଠାରୁ ଅଧିକ ମାଛ ମାଂସ ବଜାରରେ ବିକ୍ରିହୁଏ। ଗୋଟିଏ ଛୋଟକାଟର ସଂହାରଲୀଳା ହୁଏ । ଏ ଦିନ ତ ଛାଡ଼ଖାଇ ନୁହେଁ ବରଂ ଖାଇ ଛାଡ଼ ବୋଲି କହିଲେ ସତ୍ୟର ଅଧିକ ନିକଟବର୍ତ୍ତୀ ହୋଇହେବ।

ଏହାପରେ ଗୋଟିଏ ମାସର ବ୍ୟବଧାନ। ଏଥିରେ ଆମିଷ ସ୍ପର୍ଶ କରାଯାଏ ନାହିଁ। ସମସ୍ତ ଅପେକ୍ଷା କରିଥାନ୍ତି ସେହି ମାହେନ୍ଦ୍ର ମୁହୂର୍ତ୍ତକୁ, ଛାଡ଼ଖାଇ ଦିନକୁ। ମୂଲ୍ୟବୃଦ୍ଧି ହେବା ଆଶଙ୍କାରେ ଅନେକେ ସେହି କାର୍ତ୍ତିକ ମାସରେ ହିଁ ଛେଳି କୁକୁଡ଼ା ଆଦି କ୍ରୟ କରି ଖାଦ୍ୟ ଦେଇ ବଞ୍ଚାଇ ରଖନ୍ତି ଛାଡ଼ଖାଇ ଦିନର ସଦୁପଯୋଗ ପାଇଁ। ଏ ମାସରେ ଶସ୍ତାରେ ମିଳେ ବୋଲି ଶେଉଳ ମାଗୁର ଆଦି ମାଛ କିଣି ଘରେ ପାଣି ହାଣ୍ଡିରେ ବଞ୍ଚେଇ ରଖାଯାଏ ଛାଡ଼ଖାଇ ମହୋତ୍ସବ ପାଇଁ। ପିକ୍‌ନିକ୍‌ରେ ମାଂସ ଭୋଜି ସହ ଆନୁସଙ୍ଗିକ କାର୍ଯ୍ୟକଳାପ ପାଇଁ ପଞ୍ଚକରେ ଯୋଜନା ପ୍ରସ୍ତୁତ ହୁଏ। ପୂର୍ଣ୍ଣମୀ ଦିନ ଅର୍ଥ ସଂଗୃହୀତ ହୋଇ ବାସି ଦିନ ଛାଡ଼ଖାଇ ପର୍ବ ପାଳିତ ହୁଏ। ଅଯୁତ ଯୁଗର କ୍ଷୁଧାର୍ତ୍ତଙ୍କ ଭଳି ଆମିଷ ଭୋଜନର ପାଶବିକ ଆବେଗକୁ ଅନୁଭବ କରାଯାଏ। ଏମାନଙ୍କ କ୍ଷୁଧାକୁ ଚରିତାର୍ଥ କରିବାକୁ ଯାଇ ଅନେକ ନିରୀହ ଜୀବ ବଳି ପଡ଼ନ୍ତି। ବଜାର ହାଟରେ ସଂହାର ଲୀଳାଟିଏ ସଂଘଟିତ ହୁଏ। ମଣିଷର ଏଇ ପାଶବିକ ଲାଳସା କାର୍ତ୍ତିକ ମାସରେ ଅର୍ଜନ କରିଥିବା ସକଳ ପୂଣ୍ୟଫଳକୁ ଯେ, ନିଷ୍ପ୍ରଭ କରିଦିଏ ଏକଥା ବୋଧହୁଏ ସମସ୍ତଙ୍କର ବୋଧଗମ୍ୟ ହୁଏ ନାହିଁ।

ପ୍ରବୃତ୍ତିର ପିଚ୍ଛିଳ ପଥରେ ପରିଚାଳିତ ହୋଇ ସୁଦ୍ଧା ଯଦି ଚିନ୍ତା ଓ ଚେତନାରେ ଏଥିପ୍ରତି ଜଣେ ନିରାସକ୍ତ ରହିପାରେ ତେବେ ନିବୃତ୍ତିନିଷ୍ଠ କୌଣସି ମହାଯୋଗୀ ଠାରୁ ତାର ପୂଣ୍ୟଫଳ କୌଣସି ଗୁଣରେ ନ୍ୟୁନ ନୁହେଁ। ଠିକ୍ ସେମିତି ନିବୃତ୍ତି ମାର୍ଗରେ ପରିଚାଳିତ ହୋଇ ସୁଦ୍ଧା ଯାହାର ଚିନ୍ତା ଓ ଚେତନା ପ୍ରବୃତ୍ତିଠାରୁ ବେଶି ଦୂରବର୍ତ୍ତୀ ନୁହେଁ ସେ ଯେତେ ସଂଯମ ଜୀବନ ଯାପନ କଲେ ସୁଦ୍ଧା ତାହା ଯେ, ଏକ ବିରାଟ ଆତ୍ମ ପ୍ରତାରଣା, ଏହା ବୁଝାଇ କହିବା ଆବଶ୍ୟକ ନାହିଁ।

ମହାକାର୍ତ୍ତିକ ମାସ ଆମ ପାଇଁ ନିବୃତ୍ତିର ମାସ ହେଉ। ସେଠି ପ୍ରବୃତ୍ତିର ତାଡ଼ନା ଆମକୁ ଅସ୍ତବ୍ୟସ୍ତ ନକରୁ। ଇନ୍ଦ୍ରିୟ ସର୍ବସ୍ୱ ଖାଇଛାଡ଼ କିମ୍ବା ଛାଡ଼ଖାଇର ପ୍ରଭାବ ଆମର ବୃହତ୍ତର ଚେତନାକୁ ଗ୍ରାସ ନ କରୁ - ଆସନ୍ତୁ ଏମିତି ଗୋଟିଏ ମାନସିକତା ନେଇ ଆମେ ସମସ୍ତେ କାର୍ତ୍ତିକ ବ୍ରତ ଉଦ୍‌ଯାପନ କରିବା।

ଅନୁପମ ଭାରତ

୨୫ ନଭେମ୍ବର, ୨୦୦୪

# ବଞ୍ଚିବାର କଳା

ପ୍ରାଣୀ ମାତ୍ରକେ ପ୍ରବୃତ୍ତିର ଅଧୀନ। ଆହାର ନିଦ୍ରା ଭୟ ଓ ମୈଥୁନ - ଏହି ଚାରି ପ୍ରବୃତ୍ତିରୁ କୌଣସି ଜୀବ ମୁକ୍ତ ନୁହେଁ। କିନ୍ତୁ ପ୍ରଭେଦ ଏତିକି ଯେ ଇତର ପ୍ରାଣୀ ଏ ପ୍ରବୃତ୍ତିର ଦାସ ହେବା ବେଳେ ମଣିଷ ଏକ ଶୃଙ୍ଖଳିତ ରୂପରେ ଏଗୁଡ଼ିକୁ ଚରିତାର୍ଥ କରେ। ବଞ୍ଚିବା ପାଇଁ ଏ ପ୍ରବୃତ୍ତିଗୁଡ଼ିକର ଚରିତାର୍ଥ ତ ଅନିବାର୍ଯ୍ୟ। ତଥାପି କିଭଳି ମର୍ଯ୍ୟାଦା ବନ୍ତ ରୂପରେଖ ଦେଇ ଏଗୁଡ଼ିକର ଚରିତାର୍ଥ କରାଯାଇ ପାରୁଛି, ତାହା ତାର ମଣିଷ ପଣିଆ ଉପରେ ନିର୍ଭର କରେ। ଯେଉଁ ବ୍ୟକ୍ତି ଯେତେ ଉନ୍ନତ ମୂଲ୍ୟବୋଧ ଭିତ୍ତିରେ ଏଗୁଡ଼ିକୁ ସାମନା କରେ ତାହାର ଜୀବନର ମାନଦଣ୍ଡ ସେତେ ଉନ୍ନତ ବୋଲି ଆମେ ବିଚାର କରୁ। ଏହା ହିଁ ଜୀବନର କଳା। ଜଣେ ମୂଲ୍ୟବୋଧ ସମ୍ପନ୍ନ ବ୍ୟକ୍ତିପାଇଁ ଅନ୍ନଠାରୁ ଆନନ୍ଦ ପର୍ଯ୍ୟନ୍ତ ପ୍ରତିଟି କ୍ଷେତ୍ର ମହତ୍ତର ଓ ମୂଲ୍ୟବାନ। ଜୀବନର କୌଣସି ଘଟଣା ଓ ପରିସ୍ଥିତିକୁ ସେ ଆଲୋଡ଼ା ମୂଲ୍ୟହୀନ ବା ଅଦରକାରୀ କହି ଫିଙ୍ଗିଦିଏ ନାହିଁ।

ସାହିତ୍ୟ, ସଙ୍ଗୀତ ନୃତ୍ୟ ଓ ଚିତ୍ରକଳା ଭଳି ଜୀବନ ମଧ୍ୟ ଏକ କଳା। କଳାତ୍ମକ ଭାବେ ବଞ୍ଚି ଶିଖିଲେ ଜୀବନ ବି ଅର୍ଥ ଲାଗେ ନାହିଁ। ଜୀବନ ସଂଗ୍ରାମରେ ପରାଜୟ ଲାଭ କଲେ ହତାଶାବୋଧ ଗ୍ରାସ କରେ ନାହିଁ କିମ୍ବା ଜୀବନର ଅଭୂତପୂର୍ବ ସଫଳତାରେ ଅଧୀର ହୋଇ ମଣିଷ ଧରାକୁ ସରା ଜ୍ଞାନ କରିନାହିଁ। ଇର୍ଷୁକମାନଙ୍କର ଇର୍ଷା, ନିନ୍ଦୁକମାନଙ୍କର ନିନ୍ଦା ତାକୁ ସୋପାନ ପରେ ସୋପାନ ଅତିକ୍ରମ କରି ଆଗକୁ ଯିବାରେ ସାହାଯ୍ୟ କରେ। ଶତ୍ରୁମାନଙ୍କର ଶତ୍ରୁତା ତାର ବ୍ୟକ୍ତିତ୍ୱକୁ ଶାଣିତ କରେ।

ଆପଣା ଲୋକଙ୍କର ସ୍ନେହ, ସଦିଚ୍ଛା, ଆଦେଶ, ଉପଦେଶ, ପ୍ରେମପ୍ରୀତି ଜୀବନକୁ ମଧୁସ୍ରାବୀ କରିଦିଏ। ଏଇମାଟି ହୋଇଯାଏ ମର୍ତ୍ତ୍ୟ ବୈକୁଣ୍ଠ। ପ୍ରତିଟି ବସ୍ତୁରେ ମଣିଷ ଦିବ୍ୟ ସତ୍ତା ଅନୁଭବ କରେ।

ବଞ୍ଚିବାର କଳା ଅର୍ଥ ନୁହେଁ ଯେ କେବଳ ଚଉଷଠି ପ୍ରକାର ବ୍ୟଞ୍ଜନ

ଭୋଗ କରି ନାନାବିଧ ଆୟ, ଅଳଙ୍କାର ବସନ ଭୂଷଣ ଭୂଷିତ ହୋଇ ତ୍ରିତଳ ପ୍ରସାଦରେ ଅବସ୍ଥାନ କରିବା। ବଞ୍ଚିବାର କଳାକୁ ଅର୍ଥନୀତି ଆଦୌ ପ୍ରଭାବିତ କରିପାରେ ନାହିଁ। ହୁଏତ ଆର୍ଥିକ ସ୍ୱଚ୍ଛଳତା କିଛି ପରିମାଣରେ ଜୀବନକୁ ସ୍ୱଚ୍ଛନ୍ଦ କରିପାରେ। କିନ୍ତୁ ସବୁ ଆର୍ଥିକ ସ୍ୱଚ୍ଛଳ ବ୍ୟକ୍ତି ଯେ ଜୀବନକୁ କଳାତ୍ମକ ଭାବରେ କଟାଇ ପାରନ୍ତି ଏହା ଭୁଲ ଧାରଣା। ବରଂ ଅନେକ ସମୟରେ ଏହି ଆର୍ଥିକ ସ୍ୱଚ୍ଛଳତା ଜୀବନ ଗତିପଥକୁ ଭୁଲ ରାସ୍ତାରେ ନେଇଯାଏ। ଥରେ ବିତ୍ତଶାଳୀ ହେବାର ନିଶା ଜାଗ୍ରତ ହେଲେ ଜୀବନର ସବୁ ମଧୁର ମାଦକତା ନଷ୍ଟ ହୋଇଯାଏ। ମଣିଷ ସ୍ୱାର୍ଥୀ ହୋଇପଡ଼େ। ଆପଣାର ଲୋକମାନଙ୍କଠାରୁ ବହୁ ଦୂରକୁ ଚାଲିଯାଏ।

ମଣିଷ ନିଜକୁ ଭଲ ନ ପାଇଲେ, ନିଜର ଦୁଃଖ ଓ ସୁଖକୁ ନ ଆପଣେଇଲେ, ଗୌରବ ଓ ଅପମାନ ସହ ସାଲିସ ନ କଲେ, ଜୀବନ କଳାତ୍ମ ହୁଏ ନାହିଁ। ନିଜ ଉପରେ ଆସ୍ଥା ସ୍ଥାପନ ନକରି, ନିଜର ଅନ୍ତର୍ନିହିତ ଗୁଣାବଳୀକୁ ଉପଲବ୍ଧି ନ କରି ଯେଉଁ ଜୀବନ ବଞ୍ଚାଯାଏ, ସେ ଜୀବନ କେବଳ ଜିଇଁବା ପାଇଁ ସିନା ସେଥିରେ କିଛି ମହତ୍ତ୍ୱ ନଥାଏ। ଏପରି ଅଙ୍ଗୀକାରହୀନ ଜୀବନ ପ୍ରତିମୁହୂର୍ତ୍ତରେ ଆମକୁ ପୀଡ଼ନ ଦେଇ ଚାଲୁଥାଏ। ବୃହତ୍ତର କାମନାଠାରୁ ଆମକୁ କାହିଁ କେତେ ଦୂରକୁ ନେଇ ନିକ୍ଷେପ କରିଦିଏ। ଚାରୁ ଚମତ୍କାର ବିହୀନ ସାଦା କାଗଜ ଫର୍ଦ୍ଦ ଭଳି ରଙ୍ଗହୀନ ଓ ନିରସ ବୋଧହୁଏ ଜୀବନ।

ଜୀବନର ସଂଘର୍ଷ ସଂଘାତ ବଞ୍ଚିବାର ଧାରାକୁ ରହସ୍ୟ ରୋମାଞ୍ଚକର ଭରିଦିଏ। ଜୀବନର ବଡ଼ଦାଣ୍ଡରେ ସଦା ଜାଗ୍ରତ ପ୍ରହରୀ ସଦୃଶ ମଣିଷ ଯେତେ ସଂଗ୍ରାମ ଓ ପ୍ରତିବନ୍ଧକର ଶୀକାର ହୁଏ ତାର ବଞ୍ଚିବାର ଅନୁଭବ ସେହି ପରିମାଣରେ ତୀବ୍ର ଓ ନିବିଡ଼ତର ହୁଏ। ଅନୁଭବ ସିଦ୍ଧ ଜ୍ଞାନ ତା' ଜୀବନ ପୋଥିକୁ ଆହୁରି ପୃଥୁଳ କରିଦିଏ। ନିଷ୍କ୍ରିୟ, ନିସ୍ତରଙ୍ଗ ଜୀବନ ଅପେକ୍ଷା ସଦା ସମ୍ବେଦନ ଓ ପ୍ରତିକ୍ରିୟାଶୀଳ ଜୀବନ ଯେ ଅଧିକ କଳାତ୍ମକ ଏହା ପ୍ରାୟ ସମସ୍ତେ ସ୍ୱୀକାର କରିବେ।

ଡ୍ରଇଁ ରୁମ୍ ସଜେଇବା, ଦାମୀ ଉପକରଣ ବ୍ୟବହାର କରିବା, ପାର୍ଟି, ପିକ୍‌ନିକ୍, କ୍ଲବ୍ ଆଦିରେ ମଉଜ ମସ୍ତି କରିବାରେ ଜୀବନ କଳାତ୍ମକ ହୋଇଯାଏ ନାହିଁ। ନିଜ ଭିତରେ ଯଦି କୌଣସି ଉନ୍ନତ ରୁଚି ବା ଯୋଗ୍ୟତା ରହିଛି ତାକୁ ଉପଲବ୍ଧି କରି ସେଗୁଡ଼ିକୁ ଅନ୍ୟମାନଙ୍କ ପାଖରେ ପହଞ୍ଚେଇବା ଜୀବନର ଅନ୍ୟତମ କଳା। ଦୟା, କ୍ଷମା, କରୁଣା, ସେବା ତ୍ୟାଗ ଏସବୁ ବ୍ୟକ୍ତିର କଳାତ୍ମକ ବିଭବ। ନିଜେ ସୁଖରେ ବଞ୍ଚିବା ସହ ଆଖପାଖର ଅଭାବୀ ମଣିଷ ପାଇଁ ଆନ୍ତରିକ ସ୍ନେହ,

ଶ୍ରଦ୍ଧା, ସମବେଦନା ଓ  ସହାନୁଭୂତିର ଧାରାଟିଏ ବୁହାଇ ଦେଲେ ନିଜ ଜୀବନ ସୁନ୍ଦର ହେବା ସଙ୍ଗେ ସଙ୍ଗେ ସମାଜ ସୁନ୍ଦର ଓ ପ୍ରାଣବନ୍ତ ପାଲଟି ଯାଏ। ଅପରର ଆନନ୍ଦ ପାଇଁ, ଏତେ ଟିକେ ହେଉପଛେ ଉତ୍ସର୍ଗୀକୃତ ହୋଇଥିବା ଜୀବନ କେବେ ବି ଦୁର୍ବିସହ ଲାଗେ ନାହିଁ। ଶତ ଝଂଜାଳ ଓ ଯନ୍ତ୍ରଣା ଭିତରେ ଜୀବନର ସ୍ୱାଦ ବାରି ହୋଇପଡ଼େ।

ଆପଣା ସାର୍ଥିକାଭାବଧାରା ଜୀବନର କାନ୍‌ଭାସକୁ କଦାକାର କରିଦିଏ। ଆତ୍ମ କୈନ୍ଦ୍ରିକ ଚିନ୍ତାଧାରା ବ୍ୟକ୍ତିକୁ ନିମ୍ନରୁ ଖସେଇ ଦେଇଥାଏ। କୁତ୍ସିତ କଦାକାର ହୋଇଯାଏ ଜୀବନର ରୂପରେଖ। ଅନ୍ୟର ଦୁଃଖରେ ସେ ଦୁଃଖୀ ହୋଇପାରେ ନାହିଁ କି ଅନ୍ୟର ସୁଖରେ ସୁଖୀ ହୋଇପାରେ ନାହିଁ। ସାମାଜିକ ଅଙ୍ଗୀକରଣ, ଦାୟିତ୍ୱ ବୋଧ ଓ କର୍ତ୍ତବ୍ୟବୋଧକୁ ଚତୁରତାର ସହ ଏଡ଼େଇ ଦେଉଥିବା ଜୀବନ କଦାପି ସରସ, ସୁନ୍ଦର ଓ ସୁଖମୟ ହୋଇପାରେ ନାହିଁ। ଏଭଳି ମାନସିକତା ସମ୍ପନ୍ନ ବ୍ୟକ୍ତି ସମାଜରୁ ସମ୍ମାନ ସହାନୁଭୂତି ଓ ମର୍ଯ୍ୟାଦା ହରେଇ ଥାଏ। ଏମାନେ ସାଥୀ ସହାୟହୀନ ହୋଇ ଏକାନ୍ତ ନିଃସଙ୍ଗ ଜୀବନ ବିତାଇଥାନ୍ତି।

ମଣିଷ ଜୀବନ ଦୁର୍ଲଭ ଜୀବନ। ଜନ୍ମଠାରୁ ମୃତ୍ୟୁପର୍ଯ୍ୟନ୍ତ ଜୀବନକୁ ଦୀର୍ଘ ଓ ପ୍ରଲମ୍ବିତ କରିବା ଜୀବନର ଲକ୍ଷ୍ୟ ନୁହେଁ ଉପଲକ୍ଷ୍ୟ। ଅସଲ ଲକ୍ଷ୍ୟ ହେଲା ଜୀବନକୁ କଳାତ୍ମକ ଭାବେ ଉପସ୍ଥାପନା କରିବା। ଏହାରି ଭିତରେ ହିଁ ମଣିଷ ଜୀବନର ସାର୍ଥକତା ନିହିତ। ନଚେତ ସେ ଇତର ପ୍ରାଣୀଠାରୁ ବି ଆହୁରି ଇତର। କାରଣ ସୃଷ୍ଟିକୁ ସରସ ସୁନ୍ଦର ଚେତନାମୟ କରିବା ପାଇଁ ସ୍ରଷ୍ଟା ଯେଉଁ ବୌଦ୍ଧିକତା ଟିକକ ମଣିଷକୁ ଦେଇଛି ତାର ସଦୁପଯୋଗ ଯଦି ସେ ନକରେ ଇତର ପ୍ରାଣୀଠାରୁ ସେ କୌଣସି ଗୁଣରେ କମ୍ ନୁହେଁ। ସ୍ରଷ୍ଟାଙ୍କର ଉଦ୍ଦେଶ୍ୟ ସଫଳ ସୃଷ୍ଟିର ଏକମାତ୍ର ଲକ୍ଷ୍ୟ। ଏ ଲକ୍ଷ୍ୟ ପଥରୁ ବିଚ୍ୟୁତ ବ୍ୟକ୍ତିର ଜୀବନ ବ୍ୟର୍ଥ ଓ ବିଭଙ୍ଗ ହୋଇଯାଏ।

ଅନୁପମ ଭାରତ

୨୯ ଜାନୁଆରୀ, ୨୦୦୫

# ମାନବର ହିତ ଶତ୍ରୁ - କ୍ରୋଧ

ସୃଷ୍ଟିର ସକଳ ଜୀବ କ୍ରୋଧର ଅଧୀନ। କାମ, କ୍ରୋଧ, ଲୋଭ, ମୋହ, ମଦ, ମାତ୍ସର୍ଯ୍ୟ - ମଣିଷର ଏ ଷଡ଼ରିପୁ ଭିତରେ କ୍ରୋଧ ସର୍ବଦା ଦ୍ୱିତୀୟ ସ୍ଥାନରେ ଥାଏ। ଏହାକୁ ଆପାତତଃ ମାନବର ପରମ ଶତ୍ରୁ ରୂପରେ ପରିଗଣିତ କଲେ ସୁଦ୍ଧା ତାର କେତେକ ସକାରାତ୍ମକ ଦିଗ ରହିଛି। ଗୀତାରେ ପରମପୁରୁଷ ଶ୍ରୀକୃଷ୍ଣ କ୍ରୋଧର ପରିଭାଷା ଦେବାକୁ ଯାଇ କହିଛନ୍ତି - ବିଷୟ ଚିନ୍ତାରୁ ଆସକ୍ତି ଆସେ, ଆସକ୍ତିରୁ ସୃଷ୍ଟି ହୁଏ କାମ। କାମରୁ କ୍ରୋଧର ସୃଷ୍ଟି। କ୍ରୋଧରୁ ସମ୍ମୋହ, ସମ୍ମୋହରୁ ସ୍ମୃତି ବିଭ୍ରମ, ସ୍ମୃତି ବିଭ୍ରମରୁ ବୁଦ୍ଧିନାଶ, ବୁଦ୍ଧିନାଶରୁ ପ୍ରାଣ ଶେଷ ଇତ୍ୟାଦି। କିନ୍ତୁ କ୍ରୋଧର ଉପଯୁକ୍ତ ଅବତାରଣାରେ ମଣିଷ ଅସାଧ୍ୟ ସାଧନ କରିପାରେ, ଅଥଚ ଅସାବଧାନ ହୋଇ ଏହାର ଅପପ୍ରୟୋଗ କଲେ ପରିଣତି ଭୟାବହ ହୋଇଉଠେ। "କ୍ରୋଧ ବ୍ରହ୍ମଚଣ୍ଡାଳ" "କ୍ରୋଧୀ ଅର୍ଦ୍ଧପାଗଳ" ଆଦି ଉକ୍ତି ମଧ୍ୟ ରହିଛି। କ୍ରୋଧର ବଶବର୍ତ୍ତୀ ହୋଇଥିବା ଲୋକର ହିତାହିତ ଜ୍ଞାନ ରହେ ନାହିଁ। ଏହା ସର୍ବନାଶକୁ ଆହ୍ୱାନ କରି ଆଣେ।

ଦ୍ୱାପର ଯୁଗର କଥା। ବିଶ୍ୱାମିତ୍ର କର୍ଣ୍ଣ ଓ ନାରଦ ଦ୍ୱାରିକା ଆସିଥାନ୍ତି। ଦ୍ୱାରିକାର ଯୁବସଂପ୍ରଦାୟ ଶାମ୍ବକୁ ନାରୀ ବେଶ କରି, ତା ପେଟରେ ଲୌହ ମୁଷଳଟିଏ ରଖ ଋଷିମାନଙ୍କୁ ପ୍ରଶ୍ନ କଲେ ଏ ନାରୀଟିର ଗର୍ଭରେ ପୁତ୍ର ଅଛି ନା କନ୍ୟା ? ସର୍ବଜ୍ଞାତା ବୟୋବୃଦ୍ଧ ଋଷିମାନେ ଯୁବକ ମାନଙ୍କର ଏ ଦୁଷ୍ଟାମୀକୁ ଲଘୁହାସ୍ୟ ଭାବରେ ଗ୍ରହଣ କରିଥିଲେ କିମ୍ବା କୃତ୍ରିମ କ୍ରୋଧ ପ୍ରକାଶ କରି ମୃଦୁ ଭର୍ତ୍ସନା କରିଥିଲେ କଥା ସରିଥାନ୍ତା। ଏ ବୟସରେ ଯୁବକମାନଙ୍କର ଏ ପ୍ରକାର ଦୁଷ୍ଟାମୀ ସାଧାରଣ କଥା। କେବଳ ଯଦୁବଂଶୀ ଯୁବକମାନଙ୍କ ଭିତରେ ଯେ ଏ ଉଦ୍ଦାମତା ଥିଲା ତା ନୁହେଁ ପ୍ରତ୍ୟେକ ଯୁଗରେ ପ୍ରତ୍ୟେକ ମଣିଷ ପାଖରେ କୈଶୋର ଓ ଯୌବନର ଏ ଉଦ୍ଦାମ ପ୍ରବୃତ୍ତି ପରିଲକ୍ଷିତ ହୁଏ। ପରମଭକ୍ତ ଅପୂର୍ବ ଧୀ ଶକ୍ତିର ଅଧିକାରୀ ହନୁମାନ ସୁଦ୍ଧା କୈଶୋର ଅବସ୍ଥାରେ ତାଙ୍କର ପ୍ରବୃତ୍ତି ହେତୁ ଋଷିମାନଙ୍କର କ୍ରୋଧର ଶିକାର

ହୋଇ ଅଭିଶପ୍ତ ହୋଇଥିଲେ। ପରେ ଅବଶ୍ୟ କିଛି ପରିମାଣରେ ଏ ଅଭିଶାପରୁ ସେ ମୁକ୍ତ ହୋଇଥିଲେ। ସାଂପ୍ରତିକ ଯୁଗରେ କିଶୋର ଓ ଯୁବ ସଂପ୍ରଦାୟକର ଏ ପ୍ରକାର ଦୁଷ୍ଟାମୀକୁ ବାପା ମାଆ, ଗୁରୁଗୁରୁଜନ, ଅଧ୍ୟାପକ ଅଧ୍ୟାପିକାମାନେ ପ୍ରତି ମୂହୁର୍ତ୍ତରେ ହଜମ କରୁଛନ୍ତି। ଅବଶ୍ୟ ଏପ୍ରକାର ଦୁଷ୍ଟାମୀ ପାଇଁ ସମୟ୍ ବିଶେଷରେ କୃତ୍ରିମ କ୍ରୋଧ ଓ ଛୋଟ ଛୋଟ ଦଣ୍ଡ ବିଧାନର ଆବଶ୍ୟକତା ରହିଛି। ବେଳେବେଳେ ଏଗୁଡ଼ିକ ବେଶ୍ ଉପଭୋଗ୍ୟ ସୁଦ୍ଧା ହୋଇଥାଏ। କିନ୍ତୁ ଯଦୁବଂଶର ଯୁବକ ମାନଙ୍କର ଛୋଟିଆ ଦୋଷ ପାଇଁ ଋଷିମାନେ ଯେଉଁ ଅକାଟ୍ୟ ଅଭିଶାପ ଦେଲେ ତାହା ଅତ୍ୟନ୍ତ ଦୁଃଖ ଦାୟକ ଜରାସନ୍ଧର କବଳରୁ ଯଦୁବଂଶକୁ ରକ୍ଷା କରିବା ପାଇଁ ଭଗବାନ ଶ୍ରୀକୃଷ୍ଣ ମଥୁରାରୁ ଦୀର୍ଘପଥ ଅତିକ୍ରମ କରି ଦ୍ୱାରକାରେ ସେମାନଙ୍କ ପାଇଁ ନିରାପଦ ସ୍ଥଳୀ ବାଛିଥିଲେ, କିନ୍ତୁ କ୍ରୋଧୀ ଋଷିମାନଙ୍କର ଅପରିଣାମଦର୍ଶୀ ଅଭିଶାପରେ ଶ୍ରୀକୃଷ୍ଣଙ୍କର ଅତିପ୍ରିୟ ଯଦୁବଂଶୀମାନେ ଶାମ୍ବଗର୍ଭସ୍ଥ ଲୌହ ମୂଷଳ ଦ୍ୱାରା ଧ୍ୱଂସ ପ୍ରାପ୍ତହେଲେ। ସ୍ୱୟଂ ଶ୍ରୀକୃଷ୍ଣ ସୁଦ୍ଧାଏଥିରୁ ମୁକ୍ତି ପାଇଲେ ନାହିଁ ସମୁଦ୍ର ଗର୍ଭରେ ନିକ୍ଷେପ ହୋଇଥିବା ଲୌହ ମୂଷଳର ଅବଶିଷ୍ଟାଂଶ ସମୟକ୍ରମେ ଜରାଶବର ହାତକୁ ଆସିଲା ଓ ସେହି ଲୌହନର୍ମିତ ଶରରେ ଶ୍ରୀକୃଷ୍ଣ ନିହତ ହେଲେ କ୍ରୋଧର ଏ ଚରମ ପରିଣତି ଇତିହାସରେ ଏକ କଳଙ୍କିତ ଅଧ୍ୟାୟ।

ପୁରାଣ ଇତିହାସର ଏକ ବିଚିତ୍ର ବିଡମ୍ବନା ଏହା ଯେ କଠୋର ସଂଯମ ଓ ସାଧନା ଭିତରେ ଇନ୍ଦ୍ରିୟ ମାନଙ୍କୁ ନିୟନ୍ତ୍ରିତ କରିଥିବା ମୁନିଋଷିମାନଙ୍କୁ ଅଧିକ କ୍ରୋଧୀ ଭାବରେ ଚିତ୍ରଣ କରାଯାଇଛି, ସେମାନଙ୍କ ଆତିଥେୟପର ତିଳେମାତ୍ର ବିଳମ୍ବ ଘଟିଲେ ସେମାନେ କ୍ରୋଧରେ ହିତାହିତ ଜ୍ଞାନଶୂନ୍ୟ ହେଇ ଅଭିସମ୍ପାତ ବର୍ଷଣ କରନ୍ତି, ଏହା ଦ୍ୱାରା ଦୋଷୀତ ଦଣ୍ଡପାଏ, ଅନେକ ସମୟରେ ନିରୀହ ନିରପରାଧୀ ବ୍ୟକ୍ତି ମଧ୍ୟ ଅଭିଶପ୍ତ ଜୀବନ ଯାପନ କରନ୍ତି। ପୁରାଣ ଇତିହାସରେ ରାଶି ରାଶି ଉଦାହରଣ ଥିଲେସୁଦ୍ଧା ଦୁର୍ବାସା ଋଷିଙ୍କ ଅଭିଶାପରେ ଜୀବନର ସକଳ ସୁଖ ସ୍ୱାଚ୍ଛନ୍ଦ୍ୟ ହରେଇଥିବା ସରଳା ଶକୁନ୍ତଳା ଓ ଗୌତମ ଋଷିଙ୍କ ଅଭିଶାପରେ ପଥର ପାଲଟି ଯାଇଥିବା ଅହଲ୍ୟାଙ୍କ ଉଦାହରଣ ଦେଲେ ଯଥେଷ୍ଟ ହେବ। କ୍ରୋଧୀ ଋଷିମାନଙ୍କ ଭିତରେ ଦୁର୍ବାସା ବୋଧହୁଏ ସର୍ବାଗ୍ରେ ପରିଗଣିତ ହୁଅନ୍ତି। ଯାହାଙ୍କ କ୍ରୋଧକୁ ଅସ୍ତ୍ର କରି ଦୁର୍ଯ୍ୟୋଧନ ପାଣ୍ଡବମାନଙ୍କୁ ଧ୍ୱଂସ କରିବାକୁ ଚେଷ୍ଟା କରିଥିଲେ, ମାତ୍ର କୃଷ୍ଣଙ୍କର ଚତୁରତା ହେତୁ ଏହା ସମ୍ଭବ ହୋଇ ପାରି ନଥିଲା।

ଏସବୁ ତ ଗଲା କ୍ରୋଧର ଧ୍ୱଂସାତ୍ମକ ଦିଗ। ଏଥର କ୍ରୋଧର ସର୍ଜନାତ୍ମକ ଦିଗ ଉପରେ କିଛି ଦୃଷ୍ଟିପାତ କରାଯାଉ। କ୍ରୋଧ ମଣିଷର ଏକ ଜୈବିକ ପ୍ରକୃତି

ନୀତିନିର୍ଦ୍ଧାରିତ ସ୍ୱଭାବ ସୁଲଭ ଜୀବନ ପ୍ରଣାଳୀ ଭିତରେ କିଛି ପରିବର୍ତ୍ତନ ଘଟିଲେ, ଅନ୍ୟର ଦୋଷତ୍ରୁଟି ଦେଖିଲେ, ନିଜର ସ୍ୱାର୍ଥ ହାନୀ ହେଲେ, ନିଜର ଅଭୀଷ୍ଟ ସାଧନ ନ ହେଲେ, କୌଣସି କାର୍ଯ୍ୟ ବାରମ୍ବାର ନିଷ୍ଫଳ ହେଲେ ସମାଜରେ ଅନ୍ୟାୟ, ଅତ୍ୟାଚାର ହେଲେ, ସାମାଜିକ ଶୃଙ୍ଖଳା ଭଙ୍ଗ ହେଲେ ମଣିଷର କ୍ରୋଧ ସୃଷ୍ଟି ହୁଏ। ଏ କ୍ଷେତ୍ରରେ ବ୍ୟକ୍ତିଟିଏ ଯଦି ପ୍ରତିକ୍ରିୟାଶୀଳ ନ ହୁଏ ଆମେ ତାକୁ ସହନଶୀଳ କହିବା ପରିବର୍ତ୍ତେ ଭୀରୁ କାପୁରୁଷ ବୋଲି କହିବା। ଏ ପରିପ୍ରେକ୍ଷୀରେ କ୍ରୋଧକୁ ସଂପୂର୍ଣ୍ଣ ପରିତ୍ୟାଗ ନ କରି ସଂଚୟ କରି ରଖିବା ଉଚିତ ଏବଂ ପରେ ଏହି ସଂଚିତ କ୍ରୋଧକୁ ପୁଞ୍ଜିକରି ପରିସ୍ଥିତିକୁ ସୁଧାରିବାକୁ ଚେଷ୍ଟା କରାଯାଇପାରେ। ନିଜର କ୍ରୋଧ ଓ ତାର ପ୍ରୟୋଗ ସଂପର୍କରେ ମହାତ୍ମାଗାନ୍ଧୀ କହିଥିଲେ "I am bottling my rage" ମୁଁ ମୋର କ୍ରୋଧକୁ ବୋତଲ ଭିତରେ ବନ୍ଦ କରି ରଖିଛି। ଇଂରେଜମାନଙ୍କର ଅନ୍ୟାୟ, ଅତ୍ୟାଚାର କୁଶାସନ ଆଦି ପ୍ରତି ତାଙ୍କର ଯଦି କ୍ରୋଧ ସୃଷ୍ଟି ହୋଇ ନଥାନ୍ତା ସେ ଆଦୌ ପ୍ରତିକ୍ରିୟାଶୀଳ ହୋଇ ନଥାନ୍ତେ ଫଳତଃ ଭାରତ ଭୂଇଁରୁ ଇଂରେଜ ଶାସନର ସଂପୂର୍ଣ୍ଣ ବିଲୋପ ସାଧନ ପାଇଁ ସଂଗ୍ରାମ ଅବ୍ୟାହତ ରଖ ନଥାନ୍ତେ।

ଆଜିର ପ୍ରତିଯୋଗିତା ପୂର୍ଣ୍ଣ ସମାଜରେ ଜୀବନ ସଂଗ୍ରାମର ଯେକୌଣସି କ୍ଷେତ୍ରରେ ଆମର ପ୍ରତିଯୋଗୀ ଆମକୁ ପଛରେ ପକାଇ ଦେଲେ ଆମେ କ୍ରୋଧରେ ଅଜ୍ଞାନ ହୋଇ ପ୍ରତିହିଂସା ପରାୟଣ ହେଇପଡ଼ୁ। କିନ୍ତୁ ପ୍ରତିଯୋଗୀର ଅମଙ୍ଗଳ କାମନା ପରିବର୍ତ୍ତେ ଆମ ଭିତରେ ଥିବା ପ୍ରତିକ୍ରିୟାକୁ ସଞ୍ଚୟ କରି ଆମର ଶକ୍ତି ସାମର୍ଥ୍ୟ ବୃଦ୍ଧି କରବାରେ ତାହା ବିନିଯୋଗ କଲେ ନିଶ୍ଚୟ ସଫଳତା ଆମର ପଦସ୍ପର୍ଶ କରିବ। କ୍ରୋଧ ଓ ସଂଗ୍ରାମୀ ମନୋବୃତ୍ତି ସର୍ବଦା ପାଖାପାଖି ଅବସ୍ଥାନ କରିଥାନ୍ତି। କ୍ରୋଧ ଦ୍ୱାରା ସଂଗ୍ରାମୀ ମନୋବୃତ୍ତିକୁ ଉଦ୍ଦୀପିତ କରି ତାକୁ ସୃଜନାତ୍ମକ ଦିଗରେ ନିୟୋଜିତ କଲେ ବ୍ୟକ୍ତିତ୍ୱର ବିକାଶ ହେବା ସଙ୍ଗେ ସଙ୍ଗେ ସମାଜର କଲ୍ୟାଣ ହୁଏ।

କ୍ରୋଧ ମାନବର ପରମ ଶତ୍ରୁ ବୋଲି ବିବେଚିତ ହୁଏ ଯଦି ଆମେ ଚିନ୍ତା କରିବା ପୂର୍ବରୁ କ୍ରୋଧରେ ଅଜ୍ଞାନ ହୋଇ ହଠାତ୍ କିଛି କରିବସୁ। ଔଚିତ୍ୟ ଅନୌଚିତ୍ୟ ଚିନ୍ତା କରିସାରି ଆମେ ଯଦି ପରେ ଏ ପ୍ରବୃତ୍ତିର ସଦୁପଯୋଗ କରିବା ତାହା ମାନବର ପରମ ମିତ୍ର ବୋଲି ପରିଗଣିତ ହେବ।

ଅନୁପମ ଭାରତ

# ଲୋକ ଚରିତ୍ର

ଲୋକୟତି ଇତି ଲୋକଃ - ମଣିଷ ଯେହେତୁ ସବୁ ଅବଲୋକନ କରିପାରେ, ତେଣୁ ଲୋକ ହେଉଛି ତାର ଅନ୍ୟ ଏକ ପ୍ରତିଶବ୍ଦ। ଅବଲୋକନ ଅର୍ଥ କେବଳ ଦେଖିବା ଅର୍ଥରେ ନୁହେଁ, କୌଣସି ଗୋଟିଏ ବିଷୟକୁ ତର୍ଜମା କରି ତାର ଉଚିତ ଅନୁଚିତ ଦିଗ୍‌ଦର୍ଶନରେ ଯେ ସମର୍ଥ ସେ ହିଁ ଲୋକ ପଦବାଚ୍ୟ। ଭଗବତ୍ ସୃଷ୍ଟିରେ ଦେବ ଦାନବ ଓ ମାନବ ଚରିତ୍ରଗୁଡ଼ିକୁ ଯଦି ଆମେ ଅନୁଶୀଳନ କରିବା ମାନବ ଚରିତ୍ର ହିଁ ସବୁଠାରୁ ବେଶୀ ଲୋଭନୀୟ ମନେହେବ। ମାନବ ଚରିତ୍ରର ନାନ୍ଦନିକତା ହେତୁ ଦେବତା ମାନେ ସୁଦ୍ଧା ଅନେକ ସମୟରେ ମଣିଷ ଚରିତ୍ରଟିଏ ହେଇ ମର୍ତ୍ତ୍ୟ ଭୂଇଁରେ ବିଚରଣ କରିବାକୁ ଆଗ୍ରହୀ ହୋଇପଡ଼ନ୍ତି। ଦେବତା ଓ ଦାନବଙ୍କ ମଧ୍ୟ ଭାଗରେ ମଣିଷ ସୃଷ୍ଟିର ପରିକଳ୍ପନା। ଆକାଶ ଓ ପାତାଳର ମଧ୍ୟଭାଗରେ ରହିଛି ମର୍ତ୍ତ୍ୟ। ମାନବର ଚାରଣ ଭୂମି। କିଛି ଦୈବୀ ପ୍ରବୃତ୍ତି ଓ କିଛି ଦାନବୀୟ ପ୍ରବୃତ୍ତିର ସନ୍ତୁଳନ ରକ୍ଷା କରି ମାନବ ଚରିତ୍ର ପରମ ରମଣୀୟ ମନେହୁଏ। ଏଠାରେ ତ୍ୟାଗ ଓ ଭୋଗର ଅପୂର୍ବ ସମାବେଶ ଘଟିଛି। ପ୍ରବୃତ୍ତି ଓ ନିବୃତ୍ତିର ସୀମାରେଖା ଭିତରେ ମାନବ ଚରିତ୍ର ଅତ୍ୟନ୍ତ ମଧୁମୟ ହୋଇଛି। ମଣିଷ ଯଦି କେବଳ ଦୈବୀ ପ୍ରବୃତ୍ତିର ହୈମାଳୟିକ ଶିଖରରେ ଅବସ୍ଥାପିତ ହୁଏ, ସେ ଚରିତ୍ରଟି ଅବାସ୍ତବ, ଖାପଛଡ଼ା ମନେହୁଏ। ଠିକ୍ ସେମିତି ଦୁର୍ଦ୍ଦମନୀୟ ଦାନବୀୟ ପ୍ରବୃତ୍ତି ସମ୍ପନ୍ନ ମଣିଷଟି ସମାଜ ପାଇଁ ଅପଶକୁନ ବୋଲି ପରିଗଣିତ ହୁଏ।

ଦୋଷତ୍ରୁଟି ମଣିଷର ଜନ୍ମସିଦ୍ଧ। ଦେବତା ସୁଦ୍ଧା ମଣିଷ ରୂପରେ ଜନ୍ମଗ୍ରହଣ କଲେ ସେ ଦୋଷତ୍ରୁଟିରୁ ମୁକ୍ତ ହୋଇପାରନ୍ତି ନାହିଁ। ଧର୍ମରାଜ ଯୁଧିଷ୍ଠିର ମର୍ଯ୍ୟାଦା ପୁରୁଷ ରାମଚନ୍ଦ୍ର ମଧ୍ୟ ଏ ଦୋଷତ୍ରୁଟିର ଅଧିନ ହୋଇପଡ଼ିଛନ୍ତି। ଯୁଧିଷ୍ଠିରଙ୍କୁ ତାଙ୍କ ଜୀବନର ସାମାନ୍ୟ ତ୍ରୁଟି ପାଇଁ ନର୍କ ଦର୍ଶନ ଯୋଗ ରହିଥିଲା। ରାମାୟଣର ଗୋଟିଏ ପ୍ରସଙ୍ଗ। ଇନ୍ଦ୍ରଜିତକୁ ବଧ କରିବା ପାଇଁ ଶର ସନ୍ଧାନ କରିବା ପୂର୍ବରୁ ଲକ୍ଷ୍ମଣ ପ୍ରଭୁ ରାମଚନ୍ଦ୍ରଙ୍କୁ ସ୍ମରଣ କରି କହିଛନ୍ତି - "ହେ ଦାଶରଥି ! ମୁଁ ଆପଣଙ୍କ ପଦବନ୍ଦନା କରୁଛି। ମୋ କାର୍ଯ୍ୟରେ ସଫଳ ହେବା ପାଇଁ ମୋତେ ଶକ୍ତି ପ୍ରଦାନ କରନ୍ତୁ।" କିନ୍ତୁ ସେ ଶର ସନ୍ଧାନରେ ସଫଳ ହୋଇପାରି ନାହାଁନ୍ତି। କାରଣ ଏକ

ତାର୍କିକ ଦୃଷ୍ଟିକୋଣରୁ ବିଚାର କଲେ ରାମଚନ୍ଦ୍ର ଦାଶରଥି ନୁହଁନ୍ତି । ଦଶରଥଙ୍କ ଭାଗ୍ୟରେ ପୁତ୍ରସନ୍ତାନ ଯୋଗ ନଥିଲା । ପୁତ୍ରେଷ୍ଟି ଯଜ୍ଞର ଚରୁଅନ୍ନ ଖାଇ ରାଣୀମାନେ ଗର୍ଭବତୀ ହୋଇଥିଲେ । ଲକ୍ଷ୍ମଣ ନିରାଶ ହୋଇ ସମ୍ବୋଧନ କରିଛନ୍ତି ହେ ପୂଣ୍ୟଶ୍ଳୋକ ରାମଚନ୍ଦ୍ର ! ତଥାପି କାର୍ଯ୍ୟ ସିଦ୍ଧିରେ ସେ ସମର୍ଥ ହେଇନାହାଁନ୍ତି, ସେତେବେଳକୁ ରାମଚନ୍ଦ୍ର ତାଡକା ରାକ୍ଷସୀକୁ ବଧକରି ନାରୀ ହତ୍ୟା ପାପରେ ଭାଗୀ ହୋଇ ସାରିଥିଲେ । ଲକ୍ଷ୍ମଣ ନିରୂପାୟ ହୋଇ କହିଛନ୍ତି - ସତ୍ୟସନ୍ଧ ଶ୍ରୀରାମ ! ତଥାପି ସେ ନିରାଶ ହେଇଛନ୍ତି । କାରଣ ରାମଚନ୍ଦ୍ର ପିତୃସତ୍ୟ ରକ୍ଷା କରି ୧୪ ବର୍ଷ ବନବାସ ଯାଇଥାଇ ପାରିଥାନ୍ତି କିନ୍ତୁ ସେ ନିଜ ସତ୍ୟ ରକ୍ଷାକରି ପାରିନାହାନ୍ତି । ବିଦ୍ୟା ଶିକ୍ଷାପରେ ଶିଷ୍ୟମାନଙ୍କୁ ଗୁରୁଙ୍କ ନିକଟରେ ଏକ ସତ୍ୟପାଠ କରିବାପାଇଁ ପଡ଼େ । ରଣକୌଶଳ ଶିକ୍ଷା କରି ଗୁରୁଙ୍କ ପାଖରେ ରଣନୀତି ସୁରକ୍ଷିତ କରିବା ପାଇଁ ସତ୍ୟପାଠ କରି ସୁଦ୍ଧା ରାମଚନ୍ଦ୍ର ଏହାକୁ ଉଲଂଘନ କରି ଲୁକ୍କାୟିତ ହେଇ ବାଳିକୁ ହତ୍ୟା କରିଛନ୍ତି । "ଏଭ୍ରିଥିଙ୍ଗ୍ ଇଜ୍ ଫେୟାର୍ ଇନ୍ ଲଭ୍ ଆଣ୍ଡ ଉଆର" ଯୁଦ୍ଧ ଏବଂ ପ୍ରେମ ବ୍ୟାପାରରେ ସବୁକିଛି ନୀତିସିଦ୍ଧ" - ଏହା ପାଶ୍ଚାତ୍ୟ ଦର୍ଶନ, କିନ୍ତୁ ଆମ ଭାରତୀୟ ଚିନ୍ତନରେ ଯୁଦ୍ଧ ସଂପର୍କୀୟ କେତେକ ନୀତି ନିୟମ ରହିଛି ସେ ନୀତିର ଉଲଂଘନ ସତ୍ୟଲଂଘନ । ରାମଚନ୍ଦ୍ର ତାହାହିଁ କରିଥିଲେ । ଶେଷ ଥରରେ ଲକ୍ଷ୍ମଣ ପୁରୁଷୋତ୍ତମ ରାମଚନ୍ଦ୍ର ବୋଲି ସମ୍ବୋଧନ କରିଛନ୍ତି । ସେତେବେଳେ ତୀରଟି ଯଥା ସ୍ଥାନକୁ ଯାଇ ଇନ୍ଦ୍ରଜିତକୁ ବଧ କରିବାରେ ସମର୍ଥ ହୋଇଛି । ଏ ଉପାଖ୍ୟାନଟିର ରାମାୟଣରେ କେତେ ଦୂର ପ୍ରାସଙ୍ଗିକତା ରହିଛି ତାହା ତ ଭିନ୍ନ ପ୍ରସଙ୍ଗ କିନ୍ତୁ ମଣିଷ ଚରିତ୍ରର ଏକ ଗୁରୁତ୍ୱପୂର୍ଣ୍ଣ ଦିଗ ଉନ୍ମୋଚନ କରିବାରେ ଏହା ବେଶ୍ ହୃଦୟଗ୍ରାହୀ ହୋଇଛି । ସାର୍ଥକ ପୁରୁଷଟିଏ ସେହି, ଯିଏ ଦୈବୀ ଓ ଦାନବୀୟ ପ୍ରବୃତ୍ତି ଭିତରେ ସନ୍ତୁଳନ ରକ୍ଷାକରି ନିଜକୁ ଅଧିକ ପରିମାଣରେ ଦୈବୀ କରିବାରେ ଦକ୍ଷତା ଅର୍ଜନ କରିଛି । ତାକୁ ହିଁ ଉତ୍ତମ ପୁରୁଷ ବା ପୁରୁଷୋତ୍ତମ ଆଖ୍ୟା ଦିଆଯାଏ । ପ୍ରତିମୂହୁର୍ତ୍ତରେ ମଣିଷ ଭିତରେ ଦେବାସୁର ସଂଗ୍ରାମ ଚାଲିଛି । କେତେବେଳେ ଦୈବୀ ପ୍ରବୃତ୍ତି ଜୟଲାଭ କରୁଛି ତ କେତେବେଳେ ଆସୁରିକ ପ୍ରବୃତ୍ତି । କିନ୍ତୁ ମଣିଷ ସର୍ବଦା ଆସୁରୀ ପ୍ରବୃତ୍ତିର ଦମନ କରି ଦୈବୀ ପ୍ରବୃତ୍ତିକୁ ଉଜ୍ଜୀବିତ କରିବା ପାଇଁ ସଜାଗ ରହିବା ଆବଶ୍ୟକ ।

ମଣିଷକୁ ଦେବଶିଶୁ, ଅମୃତର ସନ୍ତାନର ମାନ୍ୟତା ଦେଇ ବହୁଦିନ ପର୍ଯ୍ୟନ୍ତ ଆମେ ଆତ୍ମସନ୍ତୋଷ ଲାଭ କରୁଥିଲୁ । କିନ୍ତୁ ସାଂପ୍ରତିକ ପରିପ୍ରେକ୍ଷୀରେ ସେ ସଂଜ୍ଞା ସୁଦ୍ଧା ବଦଳି ଯାଇଛି । ମଣିଷ ଶରୀରକୁ ଟିକିନିଖି ପରୀକ୍ଷା ନିରୀକ୍ଷା କରି ଜୀବ ବିଜ୍ଞାନୀମାନେ ମତ ଦିଅନ୍ତି, ମଣିଷ ସୃଷ୍ଟି ଅମୃତରୁ ନୁହେଁ, ବରଂ ବିଷରୁ । ମଣିଷ ଶରୀର ସୃଷ୍ଟି ପ୍ରକ୍ରିୟାର ଅଣୁ ପରମାଣୁରେ ପୋଟାସିୟମ୍ ସ୍ୟାଇନାଇଡ୍

ଜାତୀୟ ଏକ ପ୍ରକାର ବିଷାକ୍ତ ଦ୍ରବ୍ୟର ଆବଶ୍ୟକତା ରହିଛି। ତେଣୁ ଅମୃତର ସନ୍ତାନ ବଦଳରେ ମଣିଷ ଅଧିକ ଭାବରେ ବିଷର ନିକଟବର୍ତ୍ତୀ। ଆଉ ଗୋଟିଏ ଉଲ୍ଲେଖ ଯୋଗ୍ୟ ପ୍ରସଙ୍ଗ ଏଠାରେ ଉଲ୍ଲେଖ କରାଯାଇପାରେ। ପଶୁପକ୍ଷୀ ଆଦି ଇତର ପ୍ରାଣୀ ମାନଙ୍କ ଶରୀର ମୃତ୍ୟୁପରେ ଶୁଦ୍ଧା ଅଲୋଡା ହୁଅନ୍ତି ନାହିଁ। ସେମାନଙ୍କ ଶରୀରର ପ୍ରତ୍ୟକ ଅଂଶ ଯେପରି ହାଡ ଶିଙ୍ଗ, ଦାନ୍ତ, ନଖ,ପର ଆଦି ଦୂର୍ମୂଲ୍ୟ ଓ ଆମ ବ୍ୟବହାରିକ ଜୀବନର ବେଶ୍ ଉପଯୋଗୀ। କିଛି ନହେଲେ ବି ରାସାୟନିକ ଦ୍ରବ୍ୟ ମାଧ୍ୟମରେ ସେମାନଙ୍କ ମରଶରୀରକୁ ସୁରକ୍ଷିତ କରି ଗୃହସଜ୍ଜା ଉପକରଣ ରୂପେ ଗ୍ରହଣ କରୁ କିନ୍ତୁ ମଣିଷ ମୃତ୍ୟୁବରଣ ପରେ ତାର କୌଣସି ଅଂଶ ଆମର ବ୍ୟବହାରିକ ଜୀବନରେ କାମରେ ଆସେ ନାହିଁ। ଇତର ପ୍ରାଣୀଙ୍କ ଅପେକ୍ଷା ମଣିଷ ମରଶରୀରର ଅଧିକ ବିଷଯୁକ୍ତ ହୋଇଉଠେ। ପରିବେଶ ପ୍ରଦୁଷଣ କରିବାରେ ଅଧିକ ପରିମାଣରେ ସାହାଯ୍ୟ କରେ। ତେଣୁ ଏଇଠି ପ୍ରଶ୍ନ ଉଠେ ଏସବୁ ସତ୍ତ୍ୱେ ସୃଷ୍ଟିର ସର୍ବଶ୍ରେଷ୍ଠ ସୃଷ୍ଟି ରୂପେ ମଣିଷକୁ କାହିଁକି ମାନ୍ୟତା ମିଳିଛି। ଏସବୁର ଏକମାତ୍ର ଉତ୍ତର ଏହା ଯେ ମଣିଷର ବିଚାର ଶକ୍ତି ରହିଛି। ଭଲ ଓ ମନ୍ଦର ବିଚାର କରି ବିବେକ ଅନୁମୋଦିତ କାର୍ଯ୍ୟରେ ସେ ଲିପ୍ତ ରହିଲେ ଏ ସୃଷ୍ଟି ସୁନ୍ଦର ଓ ମଧୁମୟ ହେବ। ଆହାର ନିଦ୍ରା ଭୟ ମୈଥୁନ ଏ ଚାରୋଟି ସ୍ତର ଅତିକ୍ରମ କରି ଦୟା, କ୍ଷମା, ସେବା, ତ୍ୟାଗ ତିତିକ୍ଷା ହିଁ ମଣିଷର ଭୂଷଣ। ଇର୍ଷା ଅସୂୟା, ପରଶ୍ରୀ କାତରତା, କ୍ଷମତା ଲାଳସା, ହିଂସାଦ୍ୱେଷ ପ୍ରତିହିଂସା ପରାୟଣତା ଏସବୁ ଲୋକ ଚରିତ୍ରର କଳଙ୍କିତ ଦିଗ ସମାଜରେ ଯେତେ ସବୁ ବିଶୃଙ୍ଖଳା ସମସ୍ୟା ଓ ସଂକଟ ସୃଷ୍ଟି ହେଉଛି। ସମସ୍ତଙ୍କ ମୂଳରେ ଲୋକ ଚରିତ୍ର ବିଦ୍ୟମାନ। ମଣିଷ ଯେଉଁଠି ପ୍ରବୃତ୍ତିର ତାଡ଼ନାରେ ପରିଚାଳିତ ସେଠି ସେ ସତ୍ ଓ ଅସତ୍ ଉଭୟ ମାର୍ଗକୁ ଆପଣେଇଛି। ସେଥିପାଇଁ ବ୍ୟକ୍ତି ବ୍ୟକ୍ତି ମଧ୍ୟରେ ଜାତି ଜାତି ମଧ୍ୟରେ ଓ ଦେଶ ଦେଶ ମଧ୍ୟରେ ଅଶାନ୍ତିର ଝଡ଼ ସୃଷ୍ଟି ହେଇଛି। ସଂଘର୍ଷ ସଂଘାତମୟ ପରିବେଶ ଭିତରେ ବଞ୍ଚିବା ଆମପାଇଁ ଦୁର୍ବିସହ ହୋଇପଡ଼ିଛି। ବିକାଶ ମୂଳକ କାର୍ଯ୍ୟ ନାଁରେ ଆମେ କେବଳ ଭୋଗସର୍ବସ୍ୱ ହୋଇ ଆସୁରିକ ପ୍ରବୃତ୍ତିର ଚରିତାର୍ଥ କରି ଚାଲିଛି। ଆମର ସୁନ୍ଦର ପୃଥିବୀଟା ଧୀରେ ଧୀରେ ନର୍କରେ ପରିଣତ ହେଲାଭଳି ଅନୁଭବ ହେଉଛି। ଲୋକ ଚରିତ୍ର ଯେଉଁଠି ନିବୃତ୍ତିର ନିଗଡ ଭିତରେ ଶୃଙ୍ଖଳିତ ସେଠି ଜୀବନ ଅନୁପମ, ସୁନ୍ଦର ଓ ମଧୁମୟ। ସ୍ନେହ ପ୍ରେମ ଓ ମମତାର ଅମୃତବର୍ଷି ଅନୁଭବରେ ଜୀବନ ସ୍ୱର୍ଗ ପାଲଟିଯାଏ।

ଶୃଙ୍ଖଳିତ ଲୋକ ଚରିତ୍ର ପ୍ରଭାବରେ ଯଦି ଏଇ ମାଟିରେ ସ୍ୱର୍ଗର ସୁଖ ଓ ନର୍କର ଯନ୍ତ୍ରଣା ସମ୍ଭବ ତାହେଲେ ମର୍ତ୍ତ୍ୟ ଭୂଇଁକୁ ସ୍ୱର୍ଗରେ ପରିଣତ କରିଦେବାରେ କୁଣ୍ଠା କାହିଁକି ?

..........................................

# ପ୍ରାକୃତିକ ବିପର୍ଯ୍ୟୟ ଓ ଆମର ଜାତୀୟ ଚରିତ୍ର

ପ୍ରକୃତିକୃତ ସକଳ ଘଟଣ ଅଘଟଣକୁ ପ୍ରାକୃତିକ ଘଟଣା କହନ୍ତି। ମଣିଷକୃତ ବିପତ୍ତିକୁ ରୋକିବା ପାଇଁ ମଣିଷର ଶକ୍ତି ରହିଛି, କିନ୍ତୁ ପ୍ରକୃତି ଜାତ ବିପତ୍ତିକୁ ରୋକିବା ପାଇଁ ମଣିଷର ଉଦ୍ୟମ କାହିଁ କେଉଁ ଅନାଦିକାଳରୁ ଅବ୍ୟାହତ ରହିଲେ ସୁଦ୍ଧା ତଥାପି ସେ ପ୍ରକୃତିକୁ ଜିଣିପାରିନାହିଁ। ମଣିଷ ତାର ବିଦ୍ୟାବୁଦ୍ଧି, ଜ୍ଞାନ, କୌଶଳ ପ୍ରୟୋଗ କରି ଚନ୍ଦ୍ରପୃଷ୍ଠରେ ପଦାର୍ପଣ କରିସାରିଲାଣି ସତ୍ୟ; କିନ୍ତୁ ପ୍ରତି ବର୍ଷ ସୂର୍ଯ୍ୟଙ୍କର ପ୍ରଖର ଅଂଶୁଘାତରେ ମରିଷ ଅକଥନୀୟ ଯନ୍ତ୍ରଣା ଭୋଗ କରୁଛି। ମହାକାଶକୁ ଉପଗ୍ରହମାନ ପ୍ରେରଣ କରି ସୂର୍ଯ୍ୟ, ଚନ୍ଦ୍ର, ତାରା, ଗ୍ରହ, ନକ୍ଷତ୍ରଙ୍କ ଗତିବିଧି ସମ୍ପର୍କରେ ସମ୍ୟକ୍ ଧାରଣା ସୃଷ୍ଟି କରି ପାରୁଛି ଅଥଚ ପ୍ରତିବର୍ଷ ଅନିୟମିତ ଋତୁଚକ୍ର ଜନିତ ସମସ୍ୟାରେ ସେ ବ୍ୟସ୍ତବିବ୍ରତ ହୋଇ ପଡ଼ୁଛି। କେଉଁଠି ଅତିବୃଷ୍ଟି ଜନିତ ପରିସ୍ଥିତିରେ ଖଣ୍ଡ ପ୍ରଳୟ ସୃଷ୍ଟି ହେଲାଣି ତ କେଉଁଠି ଅନାବୃଷ୍ଟି ଜନିତ ସମସ୍ୟା ଲୋକମାନଙ୍କୁ ଅତିଷ୍ଠ ଦେଲାଣି। ପ୍ରଖର ସୂର୍ଯ୍ୟ ରଶ୍ମିରେ କେଉଁଅଞ୍ଚଳ ଜଳିପୋଡ଼ି ଛାରଖାର ହୋଇ ଗଲାଣି ତ ତୁଷାରପାତ ଜନିତ ପ୍ରବଳ ଶୀତ ଲହରୀରେ କେଉଁ ଅଞ୍ଚଳରେ ଲୋକ ମୃତ୍ୟୁମୁଖରେ ପଡ଼ିଲେଣି।

ପ୍ରତିକୂଳ ପରିସ୍ଥିତି ସହ ସଂଗ୍ରାମ କରି ନିଜର ସ୍ଥିତି ବଜାୟ ରଖିବା ଅର୍ଥ ହିଁ ଜୀବନ। "ସର୍ଭାଇଭଲ ଅଫ୍ ଦି ଫିଟେଷ୍ଟ" - ଡାର୍‌ଉଇନ୍‌ଙ୍କର ଏ ମତବାଦ ଅନୁସାରେ ନାନା ଘାତ-ପ୍ରତିଘାତ ଭିତରେ ଯିଏ ବଞ୍ଚିବାର ସଂଗ୍ରାମ ଜାରି ରଖିଲା ସେ ତିଷ୍ଠି ରହିଲା। ନଚେତ୍ ସମୟର ସୁଅରେ ସେ ନିଶ୍ଚିହ୍ନ ହୋଇଯିବା ଅନିବାର୍ଯ୍ୟ। ସେ ଯେତେ କ୍ଷୁଦ୍ର ହେଉ ବା ବୃହତ୍। ଯେଉଁଠି ଡାଏନୋସର, ସୁପର କ୍ରକ୍ ଭଳି ବିଶାଳକାୟ ଜନ୍ତୁ ପ୍ରତିକୂଳ ପରିସ୍ଥିତିରେ ତିଷ୍ଠି ନ ପାରି ପୃଥିବୀ ବକ୍ଷରୁ ନିଶ୍ଚିହ୍ନ ହୋଇଗଲେ, ସେଠି ସାଧାରଣ ଜନ୍ତୁଙ୍କ ଖବର ବା କିଏ ରଖୁଛି ?

ସମ୍ପ୍ରତି ବନ୍ୟା, ବାତ୍ୟା, ମରୁଡି, ଭୂମିକମ୍ପ, ବଣପୋଡ଼ି, ମହାମାରୀ ଆଦି ପ୍ରାକୃତିକ ବିପର୍ଯ୍ୟୟ ମଣିଷ ସମାଜକୁ ଭୀତତ୍ରସ୍ତ କରି ରଖୁଛି। ଅନ୍ୟାନ୍ୟ ଛୋଟ

ବଡ଼ ଘଟଣା ଦୁର୍ଘଟଣାକୁ ବାଦ ଦେଲେ ବର୍ତ୍ତମାନ ବିଶ୍ୱର ମୁଖ୍ୟ ସମସ୍ୟା ହେଉଛି ଆତଙ୍କରାଜ ଓ ପ୍ରାକୃତିକ ବିପର୍ଯ୍ୟୟ। ବିଶ୍ୱ ଜନତାର ସକଳ ସାମର୍ଥ୍ୟ ଏ ଦୁଇଟି ସମସ୍ୟାର ସମାଧାନ ନିମନ୍ତେ ତଥାପି ନିଅଣ୍ଟ ପଡ଼ିଯାଉଛି। ଗୋଟିଏ ମଣିଷ କୃତ ଅନ୍ୟଟି ପ୍ରକୃତି ଜାତ। ମାନବ ସମାଜକୁ ଅସ୍ତବ୍ୟସ୍ତ କରୁଥିବା ଏ ଦୁଇଟି ଯାକ ବିପତ୍ତି କେବଳ ସାମ୍ପ୍ରତିକ ସମସ୍ୟା ନୁହେଁ। ଯୁଗଯୁଗ ଧରି ମଣିଷ ସମାଜର ସୁଖ ଶାନ୍ତି ବିନଷ୍ଟ କରୁଥିବା ଏହି ଆତଙ୍କରାଜ ସମାଜପାଇଁ ଅଭିଶାପ ପାଲଟିଛି। ଦେବାସୁର ସଂଗ୍ରାମ ପର୍ଯ୍ୟାୟରୁ ଯଦି ଆମେ ପର୍ଯ୍ୟାଲୋଚନା କରିବା ଦେଖିବା, ପ୍ରତି ମୂହୁର୍ତ୍ତରେ ଅସୁରମାନେ ଦେବତାମାନଙ୍କ ପାଇଁ ଆତଙ୍କ ସୃଷ୍ଟି କରୁଥିଲେ। ସେମାନଙ୍କ ସୁଖ ସ୍ୱାଚ୍ଛନ୍ଦ୍ୟରେ ବାଧା ସୃଷ୍ଟିକରି ପରିସ୍ଥିତି ଉଦ୍‌ବେଗଜନକ କରି ରଖିଥିଲେ। କେଉଁଠି କେତେବେଳେ ସେମାନେ ଦେବତାମାନଙ୍କୁ ଅପହରଣ କଲେଣି ତ କେତେବେଳେ ଦେବତାମାନେ ନିଜ ତରଫରୁ ସେମାନଙ୍କ ଭୟରେ ଆତ୍ମଗୋପନ କଲେଣି। ତା ପରବର୍ତ୍ତୀ ପର୍ଯ୍ୟାୟ ଅନୁଧ୍ୟାନ କଲେ ଜଣାଯାଏ ରାବଣର ଅନୁଚରମାନେ ଦଣ୍ଡକାରଣ୍ୟକୁ ଆତଙ୍କବାଦର ପେଣ୍ଠସ୍ଥଳି କରି ରଖିଥିଲେ। ମୁନିଋଷିମାନେ ସେମାନଙ୍କ ଦାଉରେ ଅତିଷ୍ଠ ହୋଇ ପଡ଼ୁଥିଲେ। ରାଜା ରାମଚନ୍ଦ୍ରଙ୍କ ପତ୍ନୀ ଦେବୀ ସୀତାଙ୍କ ଅପହରଣକୁ ଆତଙ୍କବାଦର କ୍ରିୟାକଳାପ ବ୍ୟତୀତ ଅନ୍ୟ କିଛି କୁହାଯାଇ ନପାରେ। ମହୀରାବଣର ରାମ ଲକ୍ଷ୍ମଣକୁ ଅପହରଣ କରିନେବା ମଧ୍ୟ ଏହି ପର୍ଯ୍ୟାୟବାଦୀ। କୁରୁକ୍ଷେତ୍ର ଯୁଦ୍ଧ ଶିବିରରେ ରାତ୍ରିର ଅନ୍ଧକାର ଭିତରେ ଅଶ୍ୱତ୍‌ଥାମାର ଦ୍ରୌପଦୀଙ୍କ ପାଞ୍ଚପୁତ୍ରର ଶିରଚ୍ଛେଦନକୁ ଆତଙ୍କବାଦ ନ କହି କ'ଣ କହିବା ? ଏମିତି ତ ରାଶି ରାଶି ଉଦାହରଣ ମିଳିବ। ତଥାପି ଏହି ଅପଶକ୍ତି ମାନଙ୍କ ବିରୁଦ୍ଧରେ ମଣିଷ ତାର ସଂଗ୍ରାମ ଅବ୍ୟାହତ ରଖିଥିଲା ଓ ଠିକ୍ ସମୟରେ ଆତଙ୍କବାଦର ହିଁ ପରାଜୟ ଘଟୁଥିଲା। ସମୟର ଇତିହାସରେ ସତ୍ୟ, ଧର୍ମ, ନ୍ୟାୟର ପ୍ରତିଷ୍ଠା ହୋଇଥିଲା, ହାର ମାନିଥିଲେ ଏହି ଅପଶକ୍ତିମାନେ। ଖାରବେଳଙ୍କ ରାଜତ୍ୱ କାଳରେ ଆମ ଓଡ଼ିଶାରେ ଏହିଭଳି ଏକ ଭୟଙ୍କର ମହାବାତ୍ୟା ହୋଇଥିଲା ବୋଲି ଇତିହାସ କହେ। ଖଣ୍ଡପ୍ରଳୟ ଘଟି ଶ୍ରୀକୃଷ୍ଣଙ୍କ ରାଜ୍ୟ ଦ୍ୱାରକା ଜଳମଗ୍ନ ହେବା ତ ଇତିହାସ ପ୍ରସିଦ୍ଧ। ଏବେସୁଦ୍ଧା ଗୁଜରାଟର ସମୁଦ୍ର ତଟ ଅଞ୍ଚଳରୁ ଦ୍ୱାରକାର ଭଗ୍ନାବଶେଷ ବାହାରୁଛି। ଖାଣ୍ଡବ ବନ ସମ୍ପର୍କରେ 'ମହାଭାରତ' ରେ ଯାହାକିଛି ବର୍ଣ୍ଣନା ଥାଉନା କାହିଁକି ଏହା ଏକ ଭୟଙ୍କର ବଣପୋଡ଼ି ହିଁ ଥିଲା। ଦଶରଥଙ୍କ ରାଜତ୍ୱ କାଳରେ ଅଯୋଧ୍ୟାରେ ଭୟଙ୍କର ମରୁଡି ହୋଇଥିବାର ପ୍ରମାଣ ମିଳେ ଯାହାର ସମ୍ମୁଖୀନ ହେବାପାଇଁ ରାଜା ଦଶରଥ ନାନାଦି ଉପାୟ କରି ନିରାଶ

ହୋଇ ଶେଷରେ ବାଳବ୍ରହ୍ମଚାରୀ ଋଷ୍ୟଶୃଙ୍ଗଙ୍କୁ ନିଜକନ୍ୟାକୁ ଅର୍ପଣ କରି ଏ ମରୁଡିରୁ ମୁକ୍ତ ହୋଇଥିଲା।

ଜୀବନ ଯେଉଁଠି ସମସ୍ୟା ବିହୀନ, ଜୀବନ ଯେଉଁଠି ସଂଗ୍ରାମଠୁ ଦୂରରେ ସେଠି ବଞ୍ଚିବାର ମାଦକତା ନାହିଁ। କ୍ରିୟାହୀନ, ପ୍ରତିକ୍ରିୟାହୀନ ସ୍ଥାଣୁ ଜୀବନ ବଞ୍ଚିବାକୁ ବଞ୍ଚିବା କୁହାଯାଏ ନାହିଁ। ପ୍ରତିକୂଳ ପରିବେଶ ସହ ସଂଗ୍ରାମ କରି ଯିଏ ବ୍ୟକ୍ତିତ୍ୱକୁ ଶାଣିତ କରେ ତାକୁ କୁହାଯାଏ ସଫଳ ମଣିଷ। ବନ୍ୟା, ବାତ୍ୟା, ମରୁଡି ଓ ଆତଙ୍କବାଦରେ ଜନଜୀବନର ପ୍ରଭୂତ କ୍ଷତି ହେଲେ ସୁଦ୍ଧା ପୁନର୍ବାର ଶ୍ମଶାନର ପାଉଁଶ ଗଦାତକୁ ଯେଉଁମାନେ ଜୀବନକୁ ପୁଣି ସାତରଙ୍ଗରେ ରଙ୍ଗୀନ୍ କରିଦିଅନ୍ତି, ସେହିମାନେ ପ୍ରଗତିର ଧ୍ୱଜା ଉଡ଼େଇ ଥାନ୍ତି। ପ୍ରାକୃତିକ ବିପର୍ଯ୍ୟୟରେ ଆକ୍ରାନ୍ତ ଲୋକମାନଙ୍କ ପାଇଁ ସାହାଯ୍ୟ, ସହାନୁଭୂତି, ସମବେଦନାର ଆବଶ୍ୟକତା ରହିଛି। ସେମାନଙ୍କ ଠାରୁ ଅପେକ୍ଷାକୃତ ଭଲ ଥିବା ଲୋକମାନଙ୍କର ଦୟା, ଦାନ, ସେବା ଓ ସହୃଦୟତା ସେମାନଙ୍କର କାମ୍ୟ। ସରକାରଙ୍କର ରିଲିଫ୍ ପାଣ୍ଠି ସେମାନଙ୍କ ପାଇଁ ଉନ୍ମୁକ୍ତ ହୋଇ ପଡ଼ିବା ଆବଶ୍ୟକ। କିନ୍ତୁ ସେସବୁ ସାମୟିକ ହେବା ଦରକାର। ଅଯାଚିତ ଦାନ, ଦକ୍ଷିଣା, ସାହାଯ୍ୟ ସହାନୁଭୂତି ଯେପରି ପ୍ରପୀଡ଼ିତ ଜନତାର ମାନସିକତାକୁ ଆକ୍ରାନ୍ତ ନ କରେ ସେଥିପ୍ରତି ସର୍ବଦା ଦୃଷ୍ଟିଦେବା ଆବଶ୍ୟକ। ପ୍ରତିକୂଳ ପରିବେଶରେ ସଂଗ୍ରାମ କରି ନିଜର ଆତ୍ମବଳ ସଂଗ୍ରହ କରିବା ପରିବର୍ତ୍ତେ ବନ୍ୟା, ବାତ୍ୟା, ମରୁଡ଼ିରେ ଯଦି ଆମେ କେବଳ ସରକାରୀ ସାହାଯ୍ୟ ଲୋଡ଼ିବା ବୈଦେଶିକ ରାଷ୍ଟ୍ରମାନଙ୍କ ପ୍ରଦତ୍ତ ଦାନ ଦକ୍ଷିଣାକୁ ହାତପାତି ଗ୍ରହଣ କରିବା ସ୍ୱାଭିମାନ ଓ ମାନ ମର୍ଯ୍ୟାଦା ଭୁଲି ମାଗଣାରେ ମିଳୁଥିବା ସାହାଯ୍ୟ ପାଇଁ ହାତ ଲମ୍ବେଇ ରଖିବା ତା ହେଲେ ଗୋଟିଏ ଜାତିର ନୈତିକ ଅଧଃପତନ ଘଟିବ। ଆମ ଭିତରେ ଏକ ଭିକ୍ଷୁ ମାନସିକତା ଧୀରେ ଧୀରେ ଜାଗ୍ରତ ହୋଇ ଉଠିବ। ସରକାର ତାଙ୍କର କର୍ତ୍ତବ୍ୟ କରିବେ। ଆମେ ବ୍ୟକ୍ତିଗତ କ୍ଷେତ୍ରରେ ପ୍ରତିକୂଳ ପରିସ୍ଥିତି ସହ ସଂଗ୍ରାମ କରି ନିଜର ସ୍ଥିତି ସୁଦୃଢ଼ କଲେ ଦେଶ ଓ ଜାତି ସୁଦୃଢ଼ ହେବ। ବ୍ୟକ୍ତି ଚରିତ୍ରକୁ ନେଇ ଜାତୀୟ ଚରିତ୍ର। ବ୍ୟକ୍ତିର ଉଦ୍ୟମ ଜାତିର ଉଦ୍ୟମ। ଦିନଥିଲା - ଏ ଜାତିର ଗୋଟିଏ ମହତ୍ ଆଦର୍ଶ ଥିଲା, ସେ କେବଳ ଦାନ କରୁଥିଲା ସିନା ଦାନ ଗ୍ରହଣକୁ ଅସମ୍ମାନ ଜନକ ବୋଲି ମନେ କରୁଥିଲା। ନିହାତି ନିରୁପାୟ ନ ହେଲେ ସେ ଅନ୍ନଛତ୍ରରେ ଖାଉନଥିଲା, ପୁଣି ଛତ୍ରରେ ଖାଉଥିବା ବ୍ୟକ୍ତିକୁ ସମାଜ ବାସନ୍ଦ ମଧ୍ୟ କରୁଥିଲା। ନିଜକୁ ଦରିଦ୍ର ବୋଲି ବାହାରେ ପ୍ରକାଶ କରିବାକୁ କୁଣ୍ଠାବୋଧ କରୁଥିଲା।

ଆଜି କିନ୍ତୁ ଏ ଜାତିର ସ୍ୱାଭିମାନ କ୍ଷୁର୍ଣ୍ଣ ହୋଇଛି। ପ୍ରପୀଡ଼ିତ ଜନତାଙ୍କ

ପାଇଁ ଆସୁଥିବା ସାହାଯ୍ୟ ବହୁଳାଂଶରେ ସ୍ୱଚ୍ଛଳ ବ୍ୟକ୍ତିଙ୍କ ପାଖକୁ ଚାଲିଯାଉଛି। ନିଜକୁ ଦାରିଦ୍ର୍ୟର ସୀମାରେଖା ତଳେ ବୋଲି ପ୍ରମାଣିତ କରିବାକୁ ନାହିଁ ନଥିବା ପ୍ରତିଯୋଗିତା। ସରକାର କେବଳ ସ୍ୱତନ୍ତ୍ର ସୁବିଧା ସୁଯୋଗ କେବଳ ଅଭାବୀ ଜନତାଙ୍କୁ ଯୋଗାଇ ଦେବାପାଇଁ ବି.ପି.ଏଲ୍. କାର୍ଡ ପ୍ରଥା ପ୍ରଚଳନ କଲେ ସିନା ସ୍ୱଚ୍ଛଳ ବ୍ୟକ୍ତିମାନେ ଚିହ୍ନଟକାରୀମାନଙ୍କ ଉପରେ ଚାପ ପ୍ରୟୋଗ ପୂର୍ବକ ଏହି କାର୍ଡ ଖଣ୍ଡେ ଖଣ୍ଡେ ହାସଲ କରି ଗରିବ ମାନଙ୍କ ପାଇଁ ଉଦ୍ଦିଷ୍ଟ ସବୁ ପ୍ରକାର ସୁବିଧା ସୁଯୋଗ ହାସଲ କରୁଛନ୍ତି। ଜାତିର ଏ ନୈତିକ ଅଧଃପତନ ପ୍ରକୃତରେ ଚିନ୍ତାର ବିଷୟ।

ଅନୁପମ ଭାରତ

୧୭ ଅକ୍ଟୋବର, ୨୦୦୩

# ନୀତି, ବ୍ୟକ୍ତିତ୍ୱ ଓ ରାଜନୀତି

ଦିନଥିଲା, ରାଜକାର୍ଯ୍ୟକୁ ବ୍ରତ ରୂପେ ଗ୍ରହଣ କରାଯାଉଥିଲା। ଶୁଦ୍ଧପୂତତା ଓ ନୀତି ନିଷ୍ଠତା ଏହାର ମୂଳମନ୍ତ୍ର ଥିଲା। ଦେଶପ୍ରତି ଆନୁଗତ୍ୟ ଓ ପ୍ରଜାନୁରଞ୍ଜନ ରାଜାମାନଙ୍କର ମୁଖ୍ୟ ଉଦ୍ଦେଶ୍ୟ ଥିଲା। ବ୍ୟକ୍ତିଗତ ସୁଖ ସ୍ୱାଚ୍ଛନ୍ଦ୍ୟକୁ ଜଳାଞ୍ଜଳି ଦେଇ ପ୍ରଜାଙ୍କର ହିତ ସାଧନ ପାଇଁ ସେମାନେ ସର୍ବଦା ବ୍ୟସ୍ତ ରହୁଥିଲେ। ନିଜର ପତ୍ନୀ, ସନ୍ତାନ ଓ ଆତ୍ମୀୟ ସ୍ୱଜନଙ୍କ ପାଇଁ ସର୍ବନିମ୍ନ ଯେତିକି ଚିନ୍ତା କରିବା କଥା ସେତିକି ହିଁ ସେମାନେ କରୁଥିଲେ। ସ୍ଥଳବିଶେଷରେ ତ ପ୍ରଜାନୁରଞ୍ଜନର ପବିତ୍ର କାର୍ଯ୍ୟାନୁଷ୍ଠାନ ପାଇଁ ଏମାନେ ମଧ୍ୟ ବଳି ପଡ଼ୁଥିଲେ। ବେଳେ ବେଳେ ରାଜାମାନେ ଯେ ଦୁରାଚାରୀ ପ୍ରଜାକଣ୍ଟକ ହେଉନଥିଲେ ତା ନୁହେଁ, କିନ୍ତୁ ସେ ସବୁ ଥିଲା ବ୍ୟତିକ୍ରମ।

ଆଜିର ରାଜନୀତି ଓ ରାଜନେତାଙ୍କ ଭଳି ସେ ସମୟର ରାଜନୀତି ଓ ରାଜପୁରୁଷମାନେ ନୀତିଭ୍ରଷ୍ଟ ନ ଥିଲେ। କ୍ଷମତା ଓ ଅର୍ଥ ସେମାନଙ୍କର ମୁଖ୍ୟ ଲକ୍ଷ୍ୟ ନଥିଲା, ଏପରିକି ଆଉରଙ୍ଗଜେବଙ୍କ ଭଳି ଦୁର୍ଦ୍ଧାନ୍ତ ନିଷ୍ଠୁର ଶାସକ ମଧ୍ୟ ବ୍ୟକ୍ତିଗତ ଖର୍ଚ୍ଚ ପାଇଁ ରାଜକୋଷରୁ ମୁଦ୍ରାଟିଏ ବି ସ୍ପର୍ଶ କରୁ ନଥିଲେ। ନିଜେ ଟୋପୀ ସିଲେଇ କରି ନିଜର ଖର୍ଚ୍ଚ ବହନ କରୁଥିଲେ। ସୁଦକ୍ଷ କୂଟନୀତିଜ୍ଞ ଚାଣକ୍ୟ ରାଜଅର୍ଥରେ କ୍ରୟ ହୋଇଥିବା ତେଲର ଦୀପକୁ ରାଜକାର୍ଯ୍ୟ ପାଇଁ ବିନିଯୋଗ କରୁଥିଲେ ଏବଂ ନିଜ ଅର୍ଥରେ କ୍ରୟ ହୋଇଥିବା ତେଲକୁ ବ୍ୟକ୍ତିଗତ କାର୍ଯ୍ୟରେ ଲଗାଉଥିଲେ। ସେ ସମ୍ପର୍କରେ ସମସ୍ତେ ଅବଗତ। ଏ ସବୁ ଉଚ୍ଚ ଚିନ୍ତାଧାରା ସମ୍ପନ୍ନ ଉଦାହରଣ ଆଜିର ରାଜନେତା ମାନଙ୍କ ପାଇଁ ଆଉ ଅନୁକରଣୀୟ ହୋଇନାହିଁ। କେବଳ ମନୋରଞ୍ଜନ ପାଇଁ ଏବଂ ସଭାସମିତିରେ ନିଜର ବାକ୍ ପଟୁତା ପ୍ରକାଶ କରିବା ପାଇଁ ଏହାକୁ ଲଘୁ ଗଳ୍ପ ହିସାବରେ ଗ୍ରହଣ କରାଯାଉଛି।

ରାଜନୀତି ହେଉଛି ସେବାର କ୍ଷେତ୍ର। ଏ କ୍ଷେତ୍ରରେ କାର୍ଯ୍ୟ କରିବାକୁ ଆଗ୍ରହୀ ବ୍ୟକ୍ତି ପ୍ରଥମେ ନିଜକୁ ସେବା, ତ୍ୟାଗ, ସଂଯମ ଓ ଉତ୍ସର୍ଗୀକୃତ ଜୀବନ ବିତାଇବା ପାଇଁ ସଂକଳ୍ପବଦ୍ଧ କରାଇଥାନ୍ତି। ସୁଦୂର ଅତୀତ କଥା ଛାଡ଼ନ୍ତୁ, ନିକଟ

ଅତୀତରେ ସ୍ୱାଧୀନତାର ପୂର୍ବବର୍ତ୍ତି ଓ ପରବର୍ତ୍ତି ଦୁଇତିନି ଦଶନ୍ଧି ପର୍ଯ୍ୟନ୍ତ ଯେଉଁମାନେ ରାଜନୀତି କରୁଥିଲେ ସେମାନେ ସମାଜର ସବୁ ଶ୍ରେଣୀୟ ଲୋକମାନଙ୍କ ପାଇଁ ଆଦର୍ଶ ସ୍ଥାନୀୟ ଥିଲେ। ସେମାନଙ୍କର ନୀତିନିଷ୍ଠତା, ଚାରିତ୍ରିକ ମହତ୍ତ୍ୱ ଓ ତ୍ୟାଗପୂତ ଜୀବନ ରାଜନୀତିକୁ ମହିମା ମଣ୍ଡିତ କରୁଥିଲା। ଅସଲ କଥା ହେଲା, ଏ ସମୟର ରାଜନୈତିକ ନେତାମାନେ ପ୍ରଥମେ ନିଜ ବ୍ୟକ୍ତିତ୍ୱ ଗଠନ କରୁଥିଲେ। ସେହି ଦକ୍ଷତା, ନୀତି, ଆଦର୍ଶ, ମୂଲ୍ୟବୋଧ ଓ ସଂସ୍କାରକୁ ନେଇ ସେମାନେ ରାଜନୀତି କ୍ଷେତ୍ରକୁ ଅବତୀର୍ଣ୍ଣ ହେଉଥିଲେ। ଫଳରେ ପରଶମଣି ଭଳି ସେହି ବ୍ୟକ୍ତିତ୍ୱର ସ୍ପର୍ଶରେ ରାଜନୀତି ଆହୁରି ମହାର୍ଘ ହୋଇ ଉଠୁଥିଲା। କ୍ଷମତା ଅର୍ଥ ଓ ଆଶୁ ଯଶ ଲାଳସା ପାଇଁ ସେଠାରେ ସ୍ଥାନ ନଥିଲା, କିମ୍ବା ସାତପୁରୁଷ ପାଇଁ ମୋଟା ଅଙ୍କର ପୁଞ୍ଜି, ସଂଗ୍ରହ ମଧ୍ୟ ସେମାନଙ୍କର ଉଦ୍ଦେଶ୍ୟ ନଥିଲା। ତା ହୋଇଥିଲେ ଦେଶ ଓ ଜାତି ଉଦ୍ଦେଶ୍ୟରେ ଜୀବନ ଓ ଯୌବନ ଉତ୍ସର୍ଗ କରିଥିବା ସ୍ୱାଧୀନତା ସଂଗ୍ରାମୀ ମାନେ ଆଜି କେବଳ ସରକାରୀ ପେନ୍‌ସନ୍ ଉପରେ ଆସ୍ଥା ରଖି ଦୁଃସ୍ଥ ଜୀବନ ବଞ୍ଚି ନଥାନ୍ତେ ଓ ସେମାନଙ୍କ ଉତ୍ତରାଧିକାରୀମାନେ ଏକ ଅନିଶ୍ଚିତ ଭବିଷ୍ୟତ ପଛରେ ଦୌଡ଼ୁ ନଥାନ୍ତେ। କିନ୍ତୁ ଆଜିର ରାଜନୀତିର ଚିତ୍ର ସମ୍ପୂର୍ଣ୍ଣ ବଦଳି ଯାଇଛି। ରାଜନୈତିକ। କର୍ମୀ ମାନଙ୍କର ଆଦର୍ଶ ଓ ଭାବମୂର୍ତ୍ତି ଲକ୍ଷ୍ୟ କରି ବୁଦ୍ଧିଜୀବୀମାନେ ରାଜନୀତି କ୍ଷେତ୍ରକୁ ଓହ୍ଲାଇବା ପାଇଁ ଭୟ କରୁଛନ୍ତି। ଯାହାର ଅନ୍ୟଗତି ନାହି ସେ ରାଜନୀତି କରୁଛି। ଏ କ୍ଷେତ୍ରରେ ପ୍ରବେଶ କରିବାପାଇଁ ଆଉ ବ୍ୟକ୍ତିତ୍ୱ ଓ ସଂସ୍କାରର ଆବଶ୍ୟକ ପଡୁନାହିଁ। 'କ୍ଷେତ୍ରେ ଗଲେ କାର୍ଯ୍ୟସିଦ୍ଧି' ନ୍ୟାୟରେ ଏଠାରେ ପ୍ରବେଶ କରି ସାରିଲା ପରେ ସେମାନେ ନିଜର ବ୍ୟକ୍ତିତ୍ୱ ଗଠନ କରୁଛନ୍ତି। ନିଜକୁ ଓ ପରିବାରକୁ ବଞ୍ଚେଇବାର କୌଣସି ନିର୍ଦ୍ଦିଷ୍ଟ ରାହା ନପାଇ ରାଜନୀତିକୁ ରାହା ରୂପେ ଗ୍ରହଣ କରୁଥିବା ବ୍ୟକ୍ତିପାଇଁ ଏହା ଯେ ଏକ ସୁନ୍ଦର ସ୍ୱାଦିଷ୍ଟ ଫଳ ପୁର୍ଣ୍ଣ ଲୋଭନୀୟ ବୃକ୍ଷ, ଏଥିରେ ଅସଙ୍ଗତି କିଛି ନାହିଁ। ତେଣୁ ସେମାନଙ୍କର ପ୍ରଥମ କର୍ତ୍ତବ୍ୟ ହେଉଛି ସେହି ଲୋଭନୀୟ ଫଳରୁ କିଛି ନିଜେଖାଇ ପରିବାରକୁ ଦେଇ ବାକିତକ ସାତପୁରୁଷ ପାଇଁ ସାଇତି ରଖିଦେବା।

କ୍ଷମତା ରଜନୀତି କଳ୍ପ ବୃକ୍ଷର ଆଉ ଏକ ଦିବ୍ୟ ଉପହାର। କ୍ଷମତା ଲାଳସା ମଣିଷର ଆଦିମ ପ୍ରବୃତ୍ତି। ଟିକିଏ ସୁଯୋଗ ପାଇଲେ ସେ ଏହାକୁ ଚରିତାର୍ଥ କରିବାପାଇଁ ଲାଗିପଡେ। ହାତରେ କ୍ଷମତାର ଚାବି କାଠିଟିଏ ପାଇଲେ ସେ ସସାଗରା ଧରାକୁ ସରାଜ୍ଞାନ କରେ। ସାଧାରଣ ଜନତା ତା ଆଦେଶରେ ଚାବିଦିଆ କଣ୍ଢେଇ ହୁଅନ୍ତୁ, ତାର ଆଦେଶରେ ସୃଷ୍ଟିସ୍ଥିତି ପ୍ରଳୟ ହେଉ-ଏମିତି ଏକ ମାନସିକତା ତାକୁ

ଅହରହ କାବୁ କରି ରଖିଥାଏ। ଫଳରେ ରାଜନୀତି କ୍ଷେତ୍ର ତାର ସ୍ୱାଭାବିକତା ହରାଏ।

ଯୁଗୀୟ ଆବଶ୍ୟକତା ଅନୁସାରେ ଗଣମାଧ୍ୟମ ଭୂମିକା ସାଂପ୍ରତିକ ସମାଜ ପାଇଁ ଅତ୍ୟନ୍ତ ଗରୁତ୍ୱପୂର୍ଣ୍ଣ। ଅନ୍ୟାନ୍ୟ କ୍ଷେତ୍ରପାଇଁ ଏହାର ଅବଦାନ ଯାହା ଥାଉ ନା କାହଁକି, ରାଜନୈତିକ କର୍ମୀମାନଙ୍କ ବ୍ୟକ୍ତିତ୍ୱ ସଜାଡିବାପାଇଁ ଏହା ପ୍ରମୁଖ ଭୂମିକା ଗ୍ରହଣ କରେ। ସେଥିପାଇଁ ଏହାକୁ କହାଯାଏ 'ଚାପଗୋଷ୍ଠୀ'(ପ୍ରେସର ଗ୍ରୁପ୍)। କିନ୍ତୁ ସବୁ ଭଲ ଜିନିଷର ଖରାପ ଦିଗଟା ଶୀଘ୍ର ଫଳପ୍ରଦ ହେବା ଭଳି ସ୍ଥଳ ବିଶେଷର ଏହି ଚାପ ଗୋଷ୍ଠୀ (ସପୋର୍ଟିଙ୍ଗି) ରୁପେ କାର୍ଯ୍ୟକରୁଛି। ରାତାରାତି ଗୋଟିଏ ନୀତିହୀନ ନେତାଟିକୁ ପ୍ରତିଷ୍ଠା ସମ୍ପନ୍ନ କରିଦେଉଛି ତ କେଉଁଠି ରାତିକ ଭିତରେ ରସାତଳାଗାମୀ କରିଦେଉଛି। ମାତ୍ର ଦୁଇ ତିନି ଦଶନ୍ଧି ପୂର୍ବ ପର୍ଯ୍ୟନ୍ତ ରାଜନୀତିରେ ସଫଳ ବ୍ୟକ୍ତିତ୍ୱଟିଏ ହେବାପାଇଁ ବର୍ଷ ବର୍ଷର ସାଧନା ଆବଶ୍ୟକ କରୁଥିଲା। ଏହି ବର୍ଷ ବର୍ଷର ସାଧନା ତାକୁ ଯେଉଁ ସଂସ୍କାର ଦେଉଥିଲା, ତାକୁ ଆଧାର କରି ସେ ଏକ ମାର୍ଜିତ ବ୍ୟକ୍ତିତ୍ୱ ହେବା ସଙ୍ଗେ ସଙ୍ଗେ ସମାଜ ପାଇଁ କଲ୍ୟାଣକାରୀ ବୋଧ ହେଉଥିଲା। କିନ୍ତୁ ଆଜି ସେ ସବୁର ଆବଶ୍ୟକତା ନାହିଁ। ରାଜନୀତିରେ ସଫଳତା ପାଇଁ ବ୍ୟକ୍ତିଭିତରେ ଅପରାଧ ପ୍ରବଣତା, ଦୁର୍ନୀତି ପରାୟଣତା ଓ ଚେତନାରେ ଅସ୍ଥିରତା ଶ୍ରେଷ୍ଠ ଗୁଣ ବୋଲି ବିବେଚିତ କରାଯାଇଛି। ଯାହାର ଅତୀତ ଯେତେ କାଳିମାମୟ ଓ ଦୂଷିତ ରାଜନୀତିରେ ତାହାର ସଫଳତା ସେତିକି ଉଜ୍ଜଳମୟ। ଏମାନଙ୍କର କୌଣସି ଲକ୍ଷ୍ୟ ନୀତି ଓ ଆଦର୍ଶ ନଥିବାରୁ ସ୍ୱାର୍ଥସିଦ୍ଧି ପାଇଁ ଦଳ ବଦଳ ନୀତିକୁ ହିଁ ମୂଳମନ୍ତ୍ର କରିଛନ୍ତି।

ଅବଶ୍ୟ ରାଜନୀତି ସମ୍ପର୍କରେ କୁହାଯାଇଛି, 'କ୍ଷମତା ମଣିଷକୁ ଦୁର୍ନୀତିଗ୍ରସ୍ତ କରେ'। ନିରଙ୍କୁଶ କ୍ଷମତା ମଣିଷକୁ ସମ୍ପୂର୍ଣ୍ଣ ଭାବରେ ଦୁର୍ନୀତି ଗ୍ରସ୍ତ କରି ପକାଏ। କ୍ଷମତା ରାଜନୀତି ଯେହେତୁ ଦୁର୍ନୀତିକୁ ଉତ୍ସାହିତ କରେ, ଏହାର ଅର୍ଥ ନୁହେଁ ଯେ ଆମେ ଦୁର୍ନୀତି ଗ୍ରସ୍ତ ଲୋକମାନଙ୍କୁ ରାଜନୀତି କ୍ଷେତ୍ରରେ ପ୍ରୋତ୍ସାହନ ଦେବା। ଜଣେ ଦୁର୍ନୀତି ଗ୍ରସ୍ତ ବ୍ୟକ୍ତି ଜୀବନରେ ଆଉ ଗୋଟିଏ ଅନୈତିକ କାର୍ଯ୍ୟ ଯେତେ ସହଜରେ କରିପାରେ, ଜଣେ ନିର୍ମଳ ଚରିତ୍ରର ବ୍ୟକ୍ତି ପ୍ରଲୋଭନ ଯେତେ ତୀବ୍ର ହେଲେ ସୁଦ୍ଧା ସେହି କାର୍ଯ୍ୟଟି କରିବା ପୂର୍ବରୁ ଆଉ ଥରେ ଚିନ୍ତା କରେ। ତେଣୁ ଏହି ଆଉଥରେ ଚିନ୍ତା କରିବାର ସୁଯୋଗ ଦେଶବାସୀ ନେବା ଉଚିତ୍। ରାଜନୀତିକୁ ସଇତାନ ମାନଙ୍କର ଚରାଭୂଇଁ ବୋଲି ଆଉ ଅଧିକ ଦିନ ବଦନାମ୍ ହେବାକୁ ଦେବା ବୁଦ୍ଧିମାନର କାର୍ଯ୍ୟ ନୁହେଁ। ସ୍ୱାଧୀନତା ପ୍ରାପ୍ତିର ୫୬ ବର୍ଷ ବିତିଯିବା ପରେ ମଧ୍ୟ ସଚେତନ

ନାଗରିକ ଦେଶପ୍ରେମୀ ଜନତାଙ୍କର ଉଦାସୀନତା ଓ ପରମୁଖାପେକ୍ଷିତା ଯୋଗୁଁ ଆମର ରାଜନେତାମାନେ ଦଶନ୍ଧି ଦଶନ୍ଧି ଧରି ରାଜକୋଷର ଲୁଣ୍ଠନ କରିଚାଲିଛନ୍ତି। ଅବଶିଷ୍ଟ ବିଶ୍ୱ ଏକବିଂଶ ଶତାବ୍ଦୀର ଆହ୍ୱାନ ସହିତ ତାଳ ଦେଇ ଅଗ୍ରଗତି କରୁଥିବା ବେଳେ ଗଣତାନ୍ତ୍ରିକ ଓ ସାମ୍ବିଧାନିକ ଶାସନର ଛତ୍ରଛାୟା ତଳେ ରହି ମଧ୍ୟ ଆମେ ଦିନକୁ ଦିନ ଦରିଦ୍ର ଓ ଅସହାୟ ହୋଉପଡ଼ୁଛୁ। ସମତାଳରେ ଆମ ଜାତୀୟ ଚରିତ୍ର ମଧ୍ୟ ସ୍ଖଳିତ ଓ ପତିତ ହୋଇପଡୁଛି। ଅନ୍ତତଃ ନିର୍ବାଚନୀ ଋତୁରେ ଏକବିଂଶ ଶତାବ୍ଦୀର ସଚେତନ ଜନତାଠାରୁ ଏ ପ୍ରକାର ବିବେଚନା ଦେଶ ଆଶାକରେ। ନୀତିସିଦ୍ଧ ବ୍ୟକ୍ତିତ୍ୱଙ୍କ ଦ୍ୱାରା ରାଜନୀତି କ୍ଷେତ୍ର ପବିତ୍ର ହୋଇ ପାରିବ। ଏ ସିଦ୍ଧାନ୍ତ କେବଳ ସାଧାରଣ ଜନତାଙ୍କ ଦ୍ୱାରା ସମ୍ଭବ।

ଅନୁପମ ଭାରତ

୭ ଏପ୍ରିଲ, ୨୦୦୪

# ଅର୍ଦ୍ଧାହାର ମୃତ୍ୟୁ ଓ ଅନାହାର ମୃତ୍ୟୁ

ଅନାହାର ମୃତ୍ୟୁ ଏକ ସ୍ପର୍ଶକାତର ପ୍ରସଙ୍ଗ। ବୌଦ୍ଧଧର୍ମରେ ଅନାହାର ଜନିତ ମୃତ୍ୟୁ ହେଲେ ନିର୍ବାଣ ପ୍ରାପ୍ତି ହୁଏ ବୋଲି ଏକ ଧାର୍ମିକ ପରମ୍ପରା ରହିଛି। ବୌଦ୍ଧ ଭିକ୍ଷୁମାନେ ସେଥିପାଇଁ ଅନ୍ନଜଳ ତ୍ୟାଗ ପୂର୍ବକ ଶରୀରକୁ ପୀଡ଼ା ଦେଇ ମୃତ୍ୟୁବରଣ କରନ୍ତି। କିନ୍ତୁ ଅନାହାର ଜନିତ ମୃତ୍ୟୁହେଲେ ନରକ ଗତିହୁଏ ବୋଲି ହିନ୍ଦୁମାନଙ୍କର ବିଶ୍ୱାସ। ସେହିହେତୁ ଆସନ୍ନ ମୃତ୍ୟୁକୁ ଅପେକ୍ଷା କରିଥିବା ବ୍ୟକ୍ତିଟିର ମୁଖରେ ନିର୍ମାଲ୍ୟଜଳ, ଗଙ୍ଗାଜଳ କିମ୍ବା ତୁଳସୀ ଜଳ ଆଦି ଦିଆଯାଏ। କୌଣସି ସ୍ଥାନରେ ଆନାହାର ମୃତ୍ୟୁ ଖବର ପ୍ରଚାରିତ ହେଲେ ପ୍ରଶାସନ ସଜାଗ ହୋଇଉଠେ। ସରକାର ସଚେତନ ହୋଇପଡ଼ନ୍ତି, ବିରୋଧୀ ଦଳକୁ ହୋ ହଲ୍ଲା କରିବାପାଇଁ ଭଲ ପ୍ରସଙ୍ଗଟିଏ ମିଳିଯାଏ। ସମ୍ବାଦ ପତ୍ରମାନଙ୍କୁ ମଧ୍ୟ ବେଶ୍ ମସଲାଦାର ପ୍ରସଙ୍ଗ ଯୁଟିଯାଏ। ସ୍ୱେଚ୍ଛାସେବୀ ଅନୁଷ୍ଠାନମାନେ ସୁଦ୍ଧା ତଦନୁସାରେ ସକ୍ରିୟ ହୋଇପଡ଼ନ୍ତି। ଜନସାଧାରଣଙ୍କ ଭିତରେ ଏ ପ୍ରସଙ୍ଗରେ ଅନେକ ତର୍କବିତର୍କ ଚାଲେ। ମୋଟ ଉପରେ ଗୋଟିଏ ଗୋଷ୍ଠୀ ଘଟଣାଟିରେ ଆଦୌ ସତ୍ୟତା ନାହିଁ ବୋଲି ପ୍ରମାଣ କରିବା ପାଇଁ ପାରୁପର୍ଯ୍ୟନ୍ତ ଚେଷ୍ଟା ଚଳାଇଲା ବେଳେ ଆଉ ଗୋଟିଏ ଗୋଷ୍ଠୀ ଘଟଣାଟି ନିଛକ ସତ୍ୟ ବୋଲି ଯୁକ୍ତି ଦର୍ଶାଇଥାନ୍ତି। ଅନାହାରଜନିତ ମୃତ୍ୟୁ ସରକାରଙ୍କର ଅପାରଗ ପଣିଆର ସର୍ବଶ୍ରେଷ୍ଠ ଉଦାହରଣ। ଦେଶରେ ଗୋଟିଏ ବି ଅନାହାର ମୃତ୍ୟୁ ପ୍ରମାଣିତ ହୋଇଗଲେ ସେ ସରକାରଙ୍କର ଆଉ ଗୋଟିଏ ଦିନ ବି କ୍ଷମତାରେ ରହିବାର ନୈତିକ ଅଧିକାର ନାହିଁ ବୋଲି ଯୁକ୍ତି ଦର୍ଶାଯାଏ।

ତେବେ ପ୍ରଶ୍ନ ଉଠେ, ସ୍ୱାଧୀନତା ପରଠାରୁ ଆଜି ପର୍ଯ୍ୟନ୍ତ ଅନାହାର ମୃତ୍ୟୁ ସମ୍ପର୍କରେ ଯେତେସବୁ ତଥ୍ୟ ପ୍ରକାଶିତ ହେଉଛି, ସେଥିରେ କ'ଣ ସତ୍ୟାସତ୍ୟ ନାହିଁ ? କୌଣସି ଗୋଟିଏ ସରକାର ଅନାହାର ମୃତ୍ୟୁଜନିତ ଅଭିଯୋଗକୁ ସତ୍ୟ ବୋଲି ସ୍ୱୀକାର କରିନାହିଁ କିମ୍ବା ସେହି ହେତୁ ଗାଦିତ୍ୟାଗ କରିବାର ଦୃଷ୍ଟାନ୍ତ ନାହିଁ। ଓଡ଼ିଶାରେ ୧୯୧୮ ଖ୍ରୀଷ୍ଟାବ୍ଦରେ ଅନାବୃଷ୍ଟି ଜନିତ ଦୁର୍ଭିକ୍ଷ ହେତୁ ଲକ୍ଷ ଲକ୍ଷ ଲୋକ ପୋକମାଛି ପରି ମୃତ୍ୟୁବରଣ କରିଥିଲେ। ସେତେବେଳେ ଏ ସଙ୍କଟର ସମାଧାନ

ପାଇଁ ଇଂରେଜ ସରକାର ଆଗେଇ ଆସିଲା ବେଳକୁ ବହୁତ ଡେରି ହୋଇଯାଇଥିଲା। ବୁଭୁକ୍ଷୁ ଜନତା ପେଟ ବିକଳରେ ଘରଦ୍ୱାରା ଗାଁ ଗଣ୍ଡା ଛାଡ଼ି କୁଆଡ଼େ ଛିନ୍ନଛତ୍ର ହୋଇ ଯାଇଥିଲେ। ଏ ଦୁର୍ଭିକ୍ଷର ବାସ୍ତବ ଚିତ୍ର ଇଂରେଜ ସରକାରର ହୃଦ୍‌ବୋଧ କରାଇବା ପାଇଁ ଉତ୍କଳମଣି ଗୋପବନ୍ଧୁ ବିଧାନସଭାକୁ ଗାମୁଛାରେ ବାନ୍ଧି ନିରନ୍ନଜନତାର ଖାଦ୍ୟ ମୁଠିଶାଗ ଓ କାଣ୍ଡିଆ କୁଣ୍ଡା ନେଇ ଯାଇଥିଲେ। ଦୁର୍ଭିକ୍ଷ ଅଭିଯୋଗ ପରେ ଯେଉଁ ସାହେବ ଜଣକ ପ୍ରାଥମିକ ରିପୋର୍ଟ ଦାଖଲ କରିଥିଲେ, ସେଥିରେ କେତେକ ଭୁଲ୍ ତଥ୍ୟ ରହିଥିବାରୁ ଓଡ଼ିଶାବାସୀଙ୍କର ଏତେବଡ଼ କ୍ଷତି ହୋଇଗଲା। ଓଡ଼ିଆଣୀମାନଙ୍କ ହାତରେ ଥିବା ପିତଳ ଖଡ଼ୁକୁ ସେ ସାହେବ ଜଣଙ୍କ ସୁନାଖଡୁ ବୋଲି ରିପୋର୍ଟ ଦେଇଥିଲେ, ଯାହାକୁ ସୁଧାରିବା ପାଇଁ ମଧୁବାବୁ ଓ ଗୋପବନ୍ଧୁ ଦାସଙ୍କୁ ବହୁକଷ୍ଟ ସ୍ୱୀକାର କରିବାକୁ ପଡ଼ିଥିଲା।

ସେ ସମୟ ଓ ଆଜିର ସମୟ ଭିତରେ ଆକାଶ ପାତାଳ ତଫାତ୍। ସେତେବେଳେ ଥିଲା ବୈଦେଶିକ ଶାସନ ଓ ବର୍ତ୍ତମାନ ଆମେ ସ୍ୱାଧୀନ ହୋଇଛୁ। ଗମନାଗମନର ଅସୁବିଧା ଓ ଦୁର୍ବଳ ଗଣମାଧ୍ୟମ ହେତୁ ଜନତାଙ୍କ ସମସ୍ୟା ସେତେବେଳେ ସରକାରଙ୍କ ନିକଟରେ ପହଞ୍ଚିପାରୁ ନଥିଲା। ବର୍ତ୍ତମାନ ଗଣମାଧ୍ୟମ ଗୁଡ଼ିକ ଏତେ ସକ୍ରିୟ ହୋଇଛନ୍ତି ଯେ, ଦେଶର କେଉଁ କୋଣ ଅନୁକୋଣରେ ସୋରିଷଟିଏ ଫୁଟିବାର ଶବ୍ଦ ହେଲେ ଗଣମାଧ୍ୟମ ରାଜଧାନୀରେ ବଜ୍ରପାତର ପ୍ରତିଧ୍ୱନି ସୃଷ୍ଟି କରୁଛନ୍ତି। ନଅଙ୍କ ଦୁର୍ଭିକ୍ଷ ଭଳି ଦୁର୍ଭିକ୍ଷ ମଧ୍ୟ ଏତେ ବ୍ୟାପକ ହେଉନାହିଁ। ଯେଉଁଠି ଅନାହାର ଜନିତ ମୃତ୍ୟୁ ଖବର ପ୍ରଚାରିତ ହେଉଛି, ତାହା ଦାରିଦ୍ର୍ୟ ଜନିତ ଅନାହାର, ତା ଘରେ ଖାଦ୍ୟ ନଥିଲେ ସୁଦ୍ଧା ସାହି ପଡ଼ିଶା ଗାଁ ଲୋକଙ୍କ ପାଖରେ ଖାଦ୍ୟର ଅଭାବ ରହୁନାହିଁ। ତା'ଛଡ଼ା ଆମର ଲୋକଙ୍କର ନୈତିକ ମୂଲ୍ୟବୋଧ ଏତେ ତଳକୁ ଖସିଯାଇ ନାହିଁ ଯେ, ଆମ ପାଖରେ ଖାଦ୍ୟ ଗଚ୍ଛିତ ଥିଲାବେଳେ ଆମ ଗାଁର ଜଣେ ଲୋକ ଅନାହାରରେ ମୃତ୍ୟୁବରଣ କରୁଥିବା ବେଳେ ଆମେ ନୀରବ ଦର୍ଶକ ସାଜିବା।

କ୍ଷୁଧାର ତାଡ଼ନା ମଣିଷକୁ ଏତେ ଅସ୍ତବ୍ୟସ୍ତ କରେ ଯେ, ସେ ଖାଦ୍ୟ ନପାଇଲେ ଅଖାଦ୍ୟ ଖାଇ ସୁଦ୍ଧା ଉଦରପୂର୍ତ୍ତି କରିବାକୁ ବ୍ୟାକୁଳ ହୋଇପଡ଼େ। ଏ ପ୍ରସଙ୍ଗରେ ଉଲ୍ଲେଖଯୋଗ୍ୟ ଯେ ମହର୍ଷି ବିଶ୍ୱାମିତ୍ର ଥରେ କ୍ଷୁଧା କବଳରୁ ବର୍ତ୍ତି ନପାରି ଚଣ୍ଡାଳ ଘରୁ ପକ୍ୱ ଶ୍ୱାନମାଂସ ଖାଇବାକୁ ଉଦ୍ୟତ ହେଉଥିଲେ, ତାହା ପୁଣି ଚୋରି କରି। ବିଖ୍ୟାତ ହାସ୍ୟାଭିନେତା ଚାର୍ଲି ଚାପ୍‌ଲିନ୍ ତାଙ୍କ ଅଭିନୀତ ଏକ ଚଳଚ୍ଚିତ୍ର ଦୃଶ୍ୟରେ କ୍ଷୁଧାର ତାଡ଼ନା ସହ୍ୟ କରିନପାରି ଚମଡ଼ା ଯୋତାକୁ ସିଝାଇ,

ଖଣ୍ଡ ଖଣ୍ଡ କରି କାଟି ଗିଳିବାର ଯେଉଁ ନିଖୁଣ ଅଭିନୟ କରିଛନ୍ତି, ତାହା କ୍ଷୁଧାର୍ତ୍ତ ମଣିଷର ଏକ ବାସ୍ତବଚିତ୍ର ପ୍ରଦାନ କରେ। ନିରନ୍ନଜନତା ଅନ୍ନ ନ ମିଳିଲେ ବିଭିନ୍ନ ପ୍ରକାର ବଣ ଫଳମୂଳ, ଗଛର ପତ୍ର, କନ୍ଦା, ଆମ୍ବ କୋଇଲି, ତେନ୍ତୁଳି ମଞ୍ଜି ଆଦି ଖାଇ ଜୀବନ ରକ୍ଷା କରିବାକୁ ଚେଷ୍ଟା କରନ୍ତି। ଅନାହାର ମୃତ୍ୟୁ ଅଭିଯୋଗ ଆସିଲେ, ମୃତ ବ୍ୟକ୍ତିର ପାକସ୍ଥଳୀ କାଟି ସେଥିରେ କିଛି ଖାଦ୍ୟ ଅଭାବ ନାହିଁ ପ୍ରମାଣିତ କରାଯାଏ, ଏହାଠାରୁ ବଳି ବିଡ଼ମ୍ବନା ବୋଧହୁଏ ମାନବ ଇତିହାସରେ ନାହିଁ। ଆମ ଦେଶରେ ଦୁଇ ଶ୍ରେଣୀର ଲୋକ ଅଛନ୍ତି, ଗୋଟିଏ ଶ୍ରେଣୀ ଅନାହାରରେ ମୃତ୍ୟୁବରଣ କରୁଥିବାବେଳ ଆଉ ଗୋଟିଏ ଗୋଷ୍ଠୀ ଅତ୍ୟାହାରରେ ମୃତ୍ୟୁବରଣ କରନ୍ତି। ସରଳ ଅର୍ଥରେ କହିଲେ କିଛି ଲୋକ ଖାଇ ମରନ୍ତି, ଆଉ କିଛି ନ ଖାଇ ମରନ୍ତି। ଖାଇ ମରିବା ଅର୍ଥ ନୁହେଁ ଯେ, ଅତ୍ୟଧିକ ଖାଇ ଖାଇ, ସେମାନଙ୍କ ପାକସ୍ଥଳୀ ଫାଟିଯାଏ ସେମାନେ ମୃତ୍ୟୁବରଣ କରନ୍ତି। ସେମିତି ନଖାଇ ମରିବା ଅର୍ଥ ନୁହେଁ ନଖାଇ ନପିଇ ଶୁଖିଶୁଖି ମରିବା। ଅତ୍ୟାହାରଜନିତ ମୃତ୍ୟୁ ହେଉଛି, ଆବଶ୍ୟକତା ଠାରୁ ଅଧିକ କ୍ୟାଲୋରୀଯୁକ୍ତ ଖାଦ୍ୟ ଖାଇବା ଦ୍ୱାରା ଉଚ୍ଚ ରକ୍ତଚାପ, ଡାଇବେଟିସ୍ ଓ ମେଦବୃଦ୍ଧି ଜନିତ ବହୁ ଜୀବନ ନେବା ଦୂରାରୋଗ୍ୟ ବ୍ୟାଧିରେ ପୀଡ଼ିତ ହେବା। ଠିକ୍ ସେମିତି ଆବଶ୍ୟକତା ଠାରୁ କମ୍ କ୍ୟାଲୋରୀଯୁକ୍ତ ଖାଉଥିବା ଦରିଦ୍ର ଜନତାଙ୍କର ଶାରୀରିକ ପୁଷ୍ଟି ଠିକ୍ ଉପାୟରେ ହୋଇପାରେ ନାହିଁ। ଶରୀରରୁ ରୋଗ ପ୍ରତିଷେଧକ ଶକ୍ତି କମିଯାଏ। ରକ୍ତହୀନତା ଜନିତ ଦୁର୍ବଳ ଶରୀରରେ ଅନ୍ନସଂସ୍ଥାନ ପାଇଁ ହାଡ଼ଭଙ୍ଗା ଶାରୀରିକ ଶ୍ରମ କରୁଥିବାରୁ ସେମାନଙ୍କ ଆୟୁଷ ରେଖା ଧୀରେ ଧୀରେ କମିକମି ଆସେ। ସାମାନ୍ୟ ଜର ବ୍ୟାଧିରେ ଶରୀର ଅତ୍ୟନ୍ତ ଦୁର୍ବଳ ହୋଇପଡ଼େ। ଆର୍ଥିକ ଅନାଟନ ହେତୁ ଉପଯୁକ୍ତ ଚିକିତ୍ସା ଓ ପଥିବ୍ୟବସ୍ଥା ହୋଇପାରେନାହିଁ। ରୋଗୀଟି ଅକାଳ ମୃତ୍ୟୁବରଣ କରେ। ଏ ମୃତ୍ୟୁକୁ ଅର୍ଦ୍ଧାହାର ମୃତ୍ୟୁ କହିଲେ ବୋଧହୁଏ ସତ୍ୟର ଅଧିକ ନିକଟବର୍ତ୍ତୀ ହେଇହେବ।

ଅନାହାର ମୃତ୍ୟୁକୁ ପ୍ରସଙ୍ଗ କରି ହଇଚଇ ସୃଷ୍ଟିକଲେ, ପ୍ରଶାସନିକ ସକ୍ରିୟତା ହେତୁ ଅନାହାର ମୃତ୍ୟୁର ପ୍ରମାଣ ତ ମିଳେ ନାହିଁ ପ୍ରତିବଦଳରେ ସରକାରଙ୍କ ତରଫରୁ ପ୍ରଭାବିତ ପରିବାରକୁ ଇନ୍ଦିରା ଆବାସ ଘରଟିଏ, ବିପିଏଲ୍ କାର୍ଡ ଖଣ୍ଡେ କିମ୍ବା କିଛି ଚାଉଳର ବ୍ୟବସ୍ଥା କରି ଦେଇ ସରକାର ନୀରବ ରହନ୍ତି। ସମୟ ଚକ୍ରରେ ସେ ପ୍ରସଙ୍ଗ ବିସ୍ମୃତ ହୋଇଯାଏ। ଏଇଠି ପ୍ରଶ୍ନ ଉଠେ, ଅନାହାର ଜନିତ ମୃତ୍ୟୁପାଇଁ ଯଦି ସରକାରଙ୍କୁ ପ୍ରତ୍ୟକ୍ଷ ଭାବରେ ଦାୟୀ କରାଯାଏ, ତାହେଲେ ଅର୍ଦ୍ଧାହାର ଜନିତ ମୃତ୍ୟୁପାଇଁ କାହିଁକି ନୁହେଁ ଉପଯୁକ୍ତ ପଥି ଔଷଧ ଓ ଚିକିତ୍ସା

ଅଭାବରୁ ନିତି ପ୍ରତିଦିନ କେତେ ହତଭାଗ୍ୟ ଯେ ମୃତ୍ୟୁବରଣ କରୁଛନ୍ତି ତାର ଇୟତ୍ତା ନାହିଁ। କିନ୍ତୁ ଏଥିପାଇଁ କ'ଣ ସ୍ୱେଚ୍ଛାସେବୀ ଅନୁଷ୍ଠାନ କିମ୍ବା 'ବିରୋଧୀ ଦଳଙ୍କର କିଛି ଭୂମିକା ନାହିଁ ? ନିକଟ ଅତୀତରେ ବାଲେଶ୍ୱର ଜିଲ୍ଲାରେ ଜଣେ ମହିଳା ଲଜ୍ଜା ନିବାରଣ ପାଇଁ ଶାଢ଼ୀ ଖଣ୍ଡେ ନଥିବାରୁ ଆତ୍ମହତ୍ୟା କରିଥିବା ଖବର ଦୈନିକ ସମ୍ବାଦପତ୍ରରେ ପ୍ରକାଶିତ ହୋଇଥିଲା। ଅନାହାର ମୃତ୍ୟୁର କାରୁଣ ଠାରୁ ଏହା କୌଣସି ଗୁଣରେ କମ୍ ନୁହେଁ। ଏ ଖବର କିନ୍ତୁ କୌଣସି ସହୃଦୟ ସଂଗ୍ରାମୀଙ୍କ ହୃଦୟରେ ରେଖାପାତ କଲାଭଳି ଅନୁଭବ କରିହେଲା ନାହିଁ। ଅନାହାର ଜନିତ ମୃତ୍ୟୁ ଘଟଣାକୁ କୌଣସି ସରକାର କେବେ ସ୍ୱୀକାର କରି ନାହାଁନ୍ତି, କିନ୍ତୁ ଅର୍ଦ୍ଧହାର ଜନିତ ସମସ୍ୟାକୁ ଅସ୍ୱୀକାର କରିବାକୁ ରାସ୍ତା ନାହିଁ ? ଏହାତ ଦାଣ୍ଡରେ ପଡ଼ି ହାଟରେ ଗଡୁଛି।

ଅନୁପମ ଭାରତ

୧୪ ଜୁଲାଇ, ୨୦୦୪

# ଜନ୍ମ ନିୟନ୍ତ୍ରଣ ବିଜ୍ଞାପନର କୁପ୍ରଭାବ

ଆର୍ଯ୍ୟଭୂମି ଭାରତ। ସଂଯମ ସଦାଚାର ଏହାର ମୂଳମନ୍ତ୍ର। ଶ୍ଳୀଳତା ଓ ସମ୍ଭ୍ରମତା ଏହାର ଜୀବନଚର୍ଯ୍ୟାର ଭୂଷଣ। ଜୀବନଶୈଳୀକୁ ସୁନ୍ଦର ମହନୀୟ ଓ ମର୍ଯ୍ୟାଦାବନ୍ତ କରିବା ପାଇଁ ଏଠି ଆର୍ଯ୍ୟ ଋଷିଗଣ ଅନେକ ନୀତି ନିୟମ ଓ ଆଚାର ସଂହିତାର ଅନୁବନ୍ଧ କରିଯାଇଛନ୍ତି। ଏକ ମଧୁମୟ ପବିତ୍ର ଆବରଣ ଭିତରେ ଜୀବନ ପଦ୍ଧତିକୁ ରମଣୀୟ କରିବା ନିମନ୍ତେ ଅନୁଶାସନ ମାନ ସୃଷ୍ଟି ହୋଇଛି। ସୃଷ୍ଟି ତତ୍ତ୍ୱର ମୂଳ ସୂତ୍ର ନାରୀ ପୁରୁଷର ସୃଜନ ପ୍ରକ୍ରିୟାକୁ ବୈଦିକ ଶ୍ଳୋକର ପବିତ୍ର ଉଚ୍ଚାରଣ ଭିତରେ ଏପରି କରିଦିଆଯାଇଛି ଯେ ବୈବାହିକ ଜୀବନକୁ ଭୋଗର ଜୀବନ ପରିବର୍ତ୍ତେ ତ୍ୟାଗର ଜୀବନ ବୋଲି ନବଦମ୍ପତ୍ତି ଗ୍ରହଣ କରିନିଅଁନ୍ତି, ଦେହଭୋଗ ବାସନା ଏଠି ଗୌଣ ମନେହୁଏ, ସେବା, ତ୍ୟାଗ, କର୍ତ୍ତବ୍ୟ ପରାୟଣତା ଭିତରେ ନିଛକ ଦେହସର୍ବସ୍ୱ ବାସନା ଶୃଙ୍ଖଳିତ ରୂପନିଏ।

ବିବାହିତ ମହିଳାଟିଏ ପାଇଁ ମସ୍ତକରେ ଅବଗୁଣ୍ଠନ ଓ ବିବାହିତ ପରୁଷଟିଏ ପାଇଁ ଶୃଙ୍ଖଳିତ ଜୀବନଯାପନ ନିମନ୍ତେ ସାମାଜିକ ବିଧି ନିର୍ଦ୍ଦେଶ ରହିଆସିଛି, ଲଜ୍ଜା,, ସଂକୋଚ ଓ ଗୋପନୀୟତା ଦାମ୍ପତ୍ୟ ଜୀବନର ଭୁଷଣ ରୂପେ ବିବେଚିତ ହୋଇଆସୁଛି, ପାଶ୍ଚାତ୍ୟ ଦମ୍ପତ୍ତିଙ୍କ ଭଳି ପ୍ରକାଶ୍ୟରେ ଚୁମ୍ବନ ଆଲିଙ୍ଗନ ଭଳି କେତେକ ପ୍ରେମୋଦ୍ଦୀପକ ଭାବକୁ ଆମ ସାମାଜିକ ବିଧିବ୍ୟବସ୍ଥା ନିଷିଦ୍ଧ କରିଛି। ଏକ ରୁଚିପୂର୍ଣ୍ଣ ଶୁଚିସ୍ନାତ ପରିବେଶ ଭିତରେ ଭାରତୀୟ ନାରୀପୁରୁଷର ମିଳନ ଘଟେ। ଏହା ଏକ ଧାର୍ମିକ କାର୍ଯ୍ୟର ଅଂଶ ବିଶେଷ ରୂପେ ବିବେଚିତ କରାଯାଇଛି।

କିନ୍ତୁ ସମୟର ପ୍ରବାହରେ ଆମ ଦେଶର ସକଳ ଶାଳୀନତା ଧୀରେ ଧୀରେ ଲୋପ ହେବାରେ ଲାଗିଛି। ସଭ୍ୟତା ଓ ସଂସ୍କୃତିର ଜଗତୀକରଣ ନାଁରେ ଆଜିର ସମାଜ ଏପରି ଏକ ସଂକଟ ଭିତର ଦେଇ ଗତି କରୁଛି, ଯେଉଁଠି ନାହିଁ ନଥିବା ଅପ୍ରୀତିକର ପରିସ୍ଥିତି ସହ ସାଲିସ୍ କରିବାକୁ ଆମେ ବାଧ୍ୟ ହେଉଛୁ। ଏମିତି କିଛି ବ୍ୟକ୍ତି ଅଛନ୍ତି, ଯେଉଁମାନେ ଅଭିଧାନରୁ ଶ୍ଳୀଳ ଅଶ୍ଳୀଳ ଶବ୍ଦ ଦୁଇଟିକୁ

ସମ୍ପୂର୍ଣ୍ଣ ଭାବରେ ଉଠେଇ ଦେବା ସପକ୍ଷରେ ଯୁକ୍ତି ବାଢ଼ନ୍ତି। ସେମାନଙ୍କ ଯୁକ୍ତି ଅନୁସାରେ ସାହିତ୍ୟ, ସଂସ୍କୃତି, କଳା ଆଦି କ୍ଷେତ୍ରରେ ଶ୍ଲୀଳ ଅଶ୍ଲୀଳ ବୋଲି କିଛି ନାହିଁ। ଏ ଚିନ୍ତାଧାରା ବାସ୍ତବ ଜୀବନ କ୍ଷେତ୍ରକୁ ମଧ୍ୟ ଏପରି ସଂକ୍ରମିତ କରି ଗଲାଣି ଯେ, ଆମ ନିତ୍ୟନୈମିତ୍ତିକ ଜୀବନରେ ଆମେ ଚାହୁଁ ନଥିଲେ ସୁଦ୍ଧା ଅନେକ ପ୍ରକାରର ଅଶୋଭନୀୟ ପରିସ୍ଥିତିର ଶିକାର ହେଉଛୁ। ଟିଭି, ରେଡ଼ିଓ, ପତ୍ରପତ୍ରିକା, ପ୍ରାଚୀରପତ୍ର ଆଦି ପ୍ରଚାର ମାଧ୍ୟମରେ ପ୍ରଦର୍ଶିତ ଅନେକ ବିଜ୍ଞାପନ ଉପରେ ଛୋଟ ଛୋଟ ଶିଶୁଙ୍କର ଅନେକ ପ୍ରଶ୍ନବାଣ ଆମକୁ ହତଚକିତ କରିଦିଏ। ଦୈନିକ ସମ୍ବାଦପତ୍ର ଓ ପତ୍ରପତ୍ରିକା ସୁଦ୍ଧା ସେମାନଙ୍କ ଆଗରେ ଧରି ପଢ଼ିବାକୁ ଆମେ ସଂକୋଚ ଅନୁଭବ କରୁ। ପରିବାର ଭିତରେ ଏକତ୍ର ବସି ଛୋଟ ପରଦାରେ ଯେଉଁଭଳି ଅସୌଜନ୍ୟ ମୂଳକ ବିଜ୍ଞାପନ ଦେଖୁ ସେଥିରେ ଆମର ଲଜ୍ଜା ସଂକୋଚ ସକଳ ସୀମା ସରହଦ ଅତିକ୍ରମ କରି ସାରିଲାଣି। ତଥାପି ସଭ୍ୟତା ଓ ପ୍ରଗତି ନାଁରେ ଏସବୁକୁ ଗଳଦ୍‌ଘର୍ମ ହୋଇ ଆମେ ସହ୍ୟ କରିଚାଲିଛୁ। ମାଂସ ଖାଉଥିବା ଲୋକ ବେକରେ ହାଡ଼ମାଳ ଲମ୍ବେଇବା ଅସୌଜନ୍ୟ ବୋଲି ଆମେ ହୃଦୟଙ୍ଗମ କଲେ ସୁଦ୍ଧା ନିର୍ବିକାରରେ ଆମେ ସେୟା ହିଁ କରିଚାଲିଛୁ।

ଦେଶର ଜନସଂଖ୍ୟା ବୃଦ୍ଧି ହେବାରେ ଲାଗିଛି। ଭାରତ ଜନସଂଖ୍ୟା ଦୃଷ୍ଟିରୁ ପୃଥିବୀରେ ୨ୟ ବୃହତ୍ତମ ରାଷ୍ଟ୍ର। ବିକାଶଶୀଳ ରାଷ୍ଟ୍ରମାନଙ୍କ ପାଇଁ ଜନସଂଖ୍ୟା ବୃଦ୍ଧି ସକଳ ସମସ୍ୟାର କାରଣ। ଏହି ଜନସଂଖ୍ୟା ନିୟନ୍ତ୍ରଣ ସକଳ ସମସ୍ୟା ସମାଧାନର ମୂଳସୂତ୍ର। ସେଥିପାଇଁ ଜନ ସଚେତନତା ପାଇଁ ରାସ୍ତାଘାଟ, ବସ୍‌ଷ୍ଟାଣ୍ଡ, ରେଳଷ୍ଟେସନ୍, ମେଳା ମଉଛବ, କାନ୍ଥ ବାଡ଼ ଆଦି ସର୍ବସାଧାରଣ ସ୍ଥାନ ଏବଂ ଟିଭି ରେଡ଼ିଓରେ ଜନ୍ମନିୟନ୍ତ୍ରଣ ଜନିତ ବିଜ୍ଞାପନ କେତେଦୂର ସ୍ପୃହଣୀୟ ?

ଇନ୍ଦ୍ରିୟ ସଂଯମ ଓ ଶୃଙ୍ଖଳିତ ଜୀବନଯାପନ ସମ୍ପର୍କୀୟ ନୀତି ନିର୍ଦ୍ଦେଶ ଆମ ଧର୍ମ ଗ୍ରନ୍ଥମାନଙ୍କରେ ଯେତିକି ରହିଛି, ବୋଧହୁଏ ପୃଥିବୀରେ ଅନ୍ୟକୌଣସି ଜାତିର ନାହିଁ। ବିବାହ ଆମ ପାଇଁ ଭୋଗ ବିଳାସ ନୁହେଁ, ବଂଶରକ୍ଷା ପାଇଁ ଏକ ପବିତ୍ର କର୍ମକାଣ୍ଡ। 'ପୁତ୍ରାର୍ଥେ କ୍ରିୟତେ ଭାର୍ଯ୍ୟା' ବୋଲି ଆମର ବେଦ ଉପନିଷଦର ଉଦାତ୍ତ ଉଚ୍ଚାରଣ ଆମକୁ ସତର୍କ କରେଇଦିଏ। ସଂଯମ ଜୀବନଯାପନ ପାଇଁ ଏତେସବୁ ଅନୁଶାସନ ଥିବା ସତ୍ତ୍ୱେ, ବିଧିର ବିଡ଼ମ୍ବନା ଏହି ଜନ୍ମ ନିୟନ୍ତ୍ରଣ ଓ ଗର୍ଭପାତ ଜନିତ ବିଜ୍ଞାପନ ବିଶ୍ୱରେ ସର୍ବାଧିକ ପରିମାଣରେ ଆମ ଦେଶରେ ପ୍ରଚାରିତ ହୁଏ। ତଥାପି ଜନସଂଖ୍ୟା ଏ ଦେଶରେ ବଢ଼ିଚାଲିଛି। ନିର୍ବିବାଦରେ ୧୦୦ କୋଟି ଅତିକ୍ରମ କରିସାରି ୨୦୦ କୋଟିର ସୀମା ସ୍ପର୍ଶ କରିବା ପାଇଁ ବିଜୟଗର୍ବରେ

ଏହା ଆଗକୁ ମାଡ଼ିଚାଲିଛି । ଯେଉଁମାନଙ୍କ ଉଦ୍ଦେଶ୍ୟରେ ଗର୍ଭନିୟନ୍ତ୍ରଣ ଓ ଗର୍ଭପାତକୁ ବୈଧ ବୋଲି ଘୋଷଣା କରାଯାଇଛି, ସେ ଉଦ୍ଦେଶ୍ୟ ଯେତିକି ଫଳପ୍ରଦ ହେଉନାହିଁ, ସେତିକି ଅବୈଧ ଉଦ୍ଦେଶ୍ୟ ସାଧନାରେ ବ୍ୟବହୃତ ହେଉଛି । ରାଜଧାନୀ ଦିଲ୍ଲୀ ସହରର ଗୋଟିଏ ଘରୋଇ କ୍ଲିନିକ୍‌ର ଗର୍ଭପାତ ସମ୍ପର୍କୀୟ ବିଜ୍ଞାପନ ଥିଲା - "ମାତ୍ର ପାଞ୍ଚଶହ ଟଙ୍କା ଖର୍ଚ୍ଚ କରି ପାଞ୍ଚଲକ୍ଷ ଟଙ୍କା ବଞ୍ଚାନ୍ତୁ" । ଅର୍ଥାତ୍ ମାତ୍ର ପାଞ୍ଚଶହ ଟଙ୍କା ଦେଇ, ଗର୍ଭପରୀକ୍ଷା କରନ୍ତୁ ଏବଂ ଯଦି କନ୍ୟା ସନ୍ତାନ ଥାଏ ତାହେଲେ ଗର୍ଭପାତ କରାଇ କନ୍ୟାଟିର ଲାଳନ ପାଳନ ଓ ବିବାହ ଆଦି ଖର୍ଚ୍ଚ ସମେତ ପାଞ୍ଚଲକ୍ଷ ଟଙ୍କାର ଖର୍ଚ୍ଚକୁ ବଞ୍ଚାନ୍ତୁ । ଅବଶ୍ୟ ପରେ ସ୍ୱେଚ୍ଛାସେବୀ ଅନୁଷ୍ଠାନମାନଙ୍କ ଦ୍ୱାରା ଏ ବିଜ୍ଞାପନକୁ ବନ୍ଦ କରାହୋଇଥିଲା ।

ଯେତେ ନୀତିନିୟମ ପ୍ରଣୟନ କରାଗଲେ ସୁଦ୍ଧା କନ୍ୟାଭ୍ରୁଣ ଚିହ୍ନଟ କରି ଗର୍ଭପାତ କରିବାର ପ୍ରଥା ବନ୍ଦ ହେଉନାହିଁ । ବିଶେଷତଃ ଆର୍ଥିକ ସ୍ୱଚ୍ଛଳ ଥିବା ଉଚ୍ଚଶିକ୍ଷିତ ପିତାମାତାଙ୍କ ଭିତରେ ଏହି ମନୋବୃତତି ବହୁଳ ପରିମାଣରେ ପରିଲକ୍ଷିତ ହେଉଛି । ସରକାରୀ ସ୍ତରରେ ଏହାର ଖବର ନ ଥିଲେ ସୁଦ୍ଧା ବେସରକାରୀ ସୂତ୍ରରୁ ଏହା ବଡ଼ ବଡ଼ ଲୋକଙ୍କ ଘରେ ସ୍ୱାଭାବିକ୍ ଘଟଣା । ଏହାଛଡ଼ା ଏକ ପରିସଂଖ୍ୟାନରୁ ଜଣାଯାଇଚି, ଦେଶରେ ଯେତେ ଗର୍ଭପାତ ହେଉଛି ସବୁଠାରୁ ଅଧିକ ଗର୍ଭପାତ ଅବିବାହିତ ଯୁବତୀମାନେ କରୁଛନ୍ତି । ବ୍ୟଭିଚାର ଓ ଭ୍ରଷ୍ଟାଚାରକୁ ଉତ୍ସାହିତ କରିବା ପାଇଁ ଏହି ଗର୍ଭପାତ ଆଇନ୍ ସହାୟକ ହେଉଛି ।

କେତେକ ଆସ୍ୱାଭାବିକ ସଂକଟକୁ ଏଡେଇବା ପାଇଁ ଗର୍ଭପାତ ଆଇନ୍ ଅନୁମୋଦିତ କରାଯାଇଥିଲା, ଯଥା ଧର୍ଷଣ ଜନିତ ଅବାଞ୍ଛିତ ଗର୍ଭ, ଶିଶୁର ଶାରୀରିକ କିମ୍ବା ମାନସିକ ବିକଳାଙ୍ଗ ହେବାର ଆଶଙ୍କା ଉପୁଜିଥିଲେ, କେତେକ ଦୂରାରୋଗ୍ୟ ବ୍ୟାଧି ପ୍ରପୀଡ଼ିତା ମାଆର ରୋଗ ସନ୍ତାନକୁ ସଂକ୍ରମିତ ହେବାର ଆଶଙ୍କା ଥିଲେ ଇତ୍ୟାଦି । ଅବିବାହିତା ବା ବିଧମାମାନଙ୍କ କ୍ଷେତ୍ରରେ କେବଳ ଧର୍ଷଣ ଜନିତ ଅବାଞ୍ଛିତ ଗର୍ଭପାତକୁ ସ୍ୱୀକୃତି ଦିଆଯାଇଥିଲା । କିନ୍ତୁ ଏହାର ଦୁରୁପଯୋଗ କରାଯାଇ ସମାଜରେ ବ୍ୟଭିଚାରକୁ ହିଁ ସ୍ୱୀକୃତି ଦିଆଯାଉଛି । କେବଳ ଆମ ଭାରତରେ ନୁହେଁ, ବିଶ୍ୱର କୌଣସି ରାଷ୍ଟ୍ରରେ କୁମାରୀ ମାତୃତ୍ୱକୁ ସହଜ ଦୃଷ୍ଟିରେ ଗ୍ରହଣ କରାଯାଏ ନାହିଁ । ସମ୍ପ୍ରତି ବିଶ୍ୱରେ ଏହା ଏକ ଗୁରୁତର ସମସ୍ୟା ରୂପେ ଠିଆ ହୋଇଛି ।

ଜନସଂଖ୍ୟାକୁ ରୋକିବା ନିମନ୍ତେ ନାନାବିଧ ବୈଜ୍ଞାନିକ ଉପାୟ ଓ କୌଶଳମାନ ସର୍ବସାଧାରଣ ସ୍ଥାନ ମାନଙ୍କର ଯେପରି ନିର୍ବିକାର ଭାବରେ ପ୍ରଚାର କରାଯାଉଛି, ତାହା ଯେକୌଣସି ସଭ୍ୟ ଓ ସୁସ୍ଥ ସମାଜର ଲକ୍ଷଣ ନୁହେଁ । ସମାଜକୁ

ସମ୍ଭ୍ରମ ଓ ଶାଳୀନ କରବାପାଇଁ କେତେକ କ୍ଷେତ୍ରରେ ଆବରଣର ଆବଶ୍ୟକତା ରହିଛି। ସ୍ୱାମୀ ସ୍ତ୍ରୀଙ୍କ ମିଳନ ଏକ ଅନିବାର୍ଯ୍ୟ ସ୍ୱାଭାବିକ ଘଟଣା। ଏଥିରେ କୌଣସି ନବୀନତ୍ୱ ନାହିଁ, କିନ୍ତୁ ସର୍ବସାଧାରଣରେ ଏ ସମ୍ପର୍କୀୟ ଆଲୋଚନା ପ୍ରତ୍ୟାଲୋଚନା ଆଦୌ ରୁଚିସମ୍ମତ ନୁହେଁ। ଅନ୍ତତଃ ଦୃଶ୍ୟ ଶ୍ରାବ୍ୟ ମାଧ୍ୟମରୁ ଏସବୁର ନଗ୍ନ ପ୍ରକାଶ ଉପରେ କିଛି ଅଙ୍କୁଶ ରହିଲେ ପରିବାରର ବୟୋଜ୍ୟେଷ୍ଠ ଓ ଶିଶୁ ଯେଉଁଠି ଏକତ୍ର ବସି କିଛି ଉପଭୋଗ କରନ୍ତି, ସେଠି ସୁସ୍ଥ ଓ ଶୋଭନୀୟ ବାତାବରଣ ସୃଷ୍ଟି ହୋଇପାରନ୍ତା।

ହାଟ ମଧ୍ୟରେ ବ୍ରହ୍ମଜ୍ଞାନ ଆଦୌ ଗ୍ରହଣୀୟ ନୁହେଁ ବୋଲି ଆମେ ଗ୍ରହଣ କରିନେଉ। ତେବେ, ଯାହା ପାଇଁ ଯାହା ଉଦ୍ଦିଷ୍ଟ ତାକୁ ସ୍ୱତନ୍ତ୍ର କର୍ମଶାଳା ମାଧ୍ୟମରେ ସିଧାସଳଖ, ସୁଚିନ୍ତିତ ଯୋଜନା ଅନୁସାରେ ତାହା ତା' ନିକଟରେ ପହଞ୍ଚାଯାଇ ପାରିବ, ସେଥିପାଇଁ ସର୍ବସାଧାରଣ ସ୍ଥାନକୁ ବ୍ୟବହାର କରାଯାଇ ପରିବେଶକୁ ଅଶାଳୀନ ଓ ଅପ୍ରୀତିକର କରି ରଖିବାର କୌଣସି ଯଥାର୍ଥତା ନାହିଁ।

ଜନ୍ମ ନିୟନ୍ତ୍ରଣ ବିଜ୍ଞାପନ ଭିତରେ ଯେ ନିଛକ ଦେହବାଦର କାମନା ଭରପୂର ହୋଇଛି ଏହା ବୁଝାଇ କହିବା ଆବଶ୍ୟକ ନାହିଁ। କିନ୍ତୁ ଆମ ଭାରତୀୟ ଦର୍ଶନ ବିନା ଅଶ୍ଳୀଳ ବିଜ୍ଞାପନରେ ମନୁଷ୍ୟକୁ ଦେହବାଦରୁ ଊର୍ଦ୍ଧ୍ୱକୁ ନେଇ ପରାମାର୍ଥିକ ଚିନ୍ତାଚେତନାରେ ଉଦ୍‌ବୁଧ କରି ଏକ ସଂଯମ ପିଣ୍ଡିତ ଜୀବନଯାପନ କରିବାରେ ସମର୍ଥ କରାଏ। ଏକଦା ନୀତି ଆଦର୍ଶ, ଶୃଙ୍ଖଳା, ସଂଯମ ଓ ପବିତ୍ରତାରେ ସମଗ୍ର ବିଶ୍ୱକୁ ଉଦ୍‌ବୁଦ୍ଧ କରୁଥିବା ଭାରତ, ତାର ଲକ୍ଷ୍ୟପଥରୁ ବିଚ୍ୟୁତ ନ ହେଉ।

ଅନୁପମ ଭାରତ

୧୧ ଫେବୃଆରୀ, ୨୦୦୪

# ରାଜକ୍ଷମା - ଏକ ସୂକ୍ଷ୍ମ ଦୃଷ୍ଟିକୋଣ

କ୍ଷମା ଏକ ଦିବ୍ୟ ଚେତନା। ପାର୍ଥିବ ଜଗତରେ କ୍ଷମାଶୀଳ ବ୍ୟକ୍ତିକୁ ଦେବତାଙ୍କ ସହ ତୁଳନା କରାଯାଏ। ପ୍ରଖ୍ୟାତ ଇଂରେଜୀ ନାଟ୍ୟକାର ଉଇଲିଅମ୍ ସେକ୍‌ସ୍‌ପିଅର ତାଙ୍କ ନାଟକ 'ମର୍ଚ୍ଚେଣ୍ଟ ଅଫ୍ ଭେନିସ୍' ରେ କ୍ଷମାଶୀଳତା ସମ୍ପର୍କରେ ଯେଉଁ ସାରଗର୍ଭକ ବର୍ଣ୍ଣନା କରିଛନ୍ତି, ତାର ପଟ୍ଟାନ୍ତର ନାହିଁ। ଆମ ଓଡ଼ିଶାର ପଲ୍ଲୀକବି ନନ୍ଦକିଶୋର ବଳଙ୍କ 'ଶର୍ମିଷ୍ଠା' କାବ୍ୟରେ ଶୁକ୍ରାଚାର୍ଯ୍ୟ ନିଜ କନ୍ୟା ଦେବଯାନୀକୁ କ୍ଷମାର ମହତ୍ତ୍ୱ ବୁଝେଇବାକୁ ଯାଇ କହିଛନ୍ତି - "କ୍ଷମା କଲେ ଝିଅ କ୍ଷମାତ ତ ମିଳଇ କ୍ଷମାର ନଥାଏ ଅନ୍ତ। କ୍ଷମା ଦାତା କ୍ଷମାଗ୍ରହୀତା - ଏ ଦୁହେଁ ସଂସାରରେ ଭାଗ୍ୟବନ୍ତ"। କ୍ଷମା ଏମିତି ଏକ ଗୁଣ, ଯାହାର ସ୍ପର୍ଶରେ କ୍ଷମାଦାତା ଓ କ୍ଷମାଗ୍ରହୀତା ଉଭୟ ମହତ୍ ପାଲଟି ଯାଆନ୍ତି।

ଅପରାଧୀ ପାଇଁ ଦଣ୍ଡ ବ୍ୟବସ୍ଥା ସବୁକାଳରେ ରହିଛି। ଅତୀତରେ ରାଜରାଜୁଡ଼ା ଅମଳରେ ଦଣ୍ଡବିଧାନ ବ୍ୟବସ୍ଥା ବର୍ତ୍ତମାନ ଅପେକ୍ଷା ଅଧିକ କଠୋର ଓ ଭୟଙ୍କର ଥିଲା ବୋଲି ଇତିହାସ କହେ। ମିଛ କହିଥିବା ଲୋକର ଜିହ୍ୱାଚ୍ଛେଦନ, ଚୋରୀ କରିଥିବା ଲୋକର ହସ୍ତ ଛେଦନ, ଧର୍ଷଣ କରିଥିବା ଲୋକର ଲିଙ୍ଗ ଛେଦନ, ଗୁରୁଜନ ମାନଙ୍କୁ ଗୋଇଠା ମାରିଥିବା ଲୋକର ପଦ ଛେଦନ, ହତ୍ୟା କରିଥିବା ଲୋକକୁ ମୃତ୍ୟୁଦଣ୍ଡ ଆଦି ଦଣ୍ଡରେ ଦଣ୍ଡିତ କରାଯାଉଥିଲା। ଏ ସବୁ ସତ୍ତ୍ୱେ ସମୟ ବିଶେଷରେ ଅପରାଧୀ ମାନଙ୍କୁ ରାଜକ୍ଷମା ଦେବାର ବ୍ୟବସ୍ଥା ମଧ୍ୟ ଥିଲା। ବେଳେ ବେଳେ ତ ରାଜାମାନେ ଦୋଷୀଟିକୁ କ୍ଷମା ଦେବା ସଙ୍ଗେ ସଙ୍ଗେ ତା ସହ ନିଜ କନ୍ୟାକୁ ବିବାହ ଦେଇ ରାଜ୍ୟରୁ ଅଧେ ସୁଦ୍ଧା ଦେଇ ପକାଉଥିଲେ। ଏ କ୍ଷେତ୍ରରେ ଆମେ ଏ ପ୍ରକାର ରାଜାଙ୍କୁ ନିର୍ବୋଧ କିମ୍ବା ହିତାହିତ ଜ୍ଞାନଶୂନ୍ୟ ବୋଲି କହିପାରିବା ନାହିଁ। କ୍ଷମା ପାଇବାର ଯୋଗ୍ୟତା ସମସ୍ତଙ୍କର ନଥାଏ, କିମ୍ବା ସବୁ ପ୍ରକାର ଅପରାଧୀଙ୍କ ହାତରେ ନିଜ କନ୍ୟାକୁ ସମର୍ପଣ କରି ରାଜାମାନେ ନିଜର ଅପରିଣାମ ଦର୍ଶିତାର ପରିଚୟ ଦିଅନ୍ତି ନାହିଁ। ଜଣେ ବ୍ୟକ୍ତି କେଉଁ ପ୍ରକାର ମାନସିକ ସ୍ଥିତିରେ ଅପରାଧ କରିଛି, ରାଜକ୍ଷମା ପାଇବା ପରେ କି ପ୍ରକାର ମାନସିକ ପରିବର୍ତ୍ତନ

ଅପରାଧିଟିର ଘଟିବ, ଏସବୁ ହୃଦୟଙ୍ଗମ କରିବାର ସୂକ୍ଷ୍ମ ଦୃଷ୍ଟିକୋଣ ଓ ସହୃଦୟତା ତତ୍କାଳୀନ ରାଜାମାନଙ୍କ ନିକଟରେ ଥିଲା । ସେ ସମସ୍ତ ବିଷୟକୁ ଅନୁଶୀଳନ କରି ଏପରି ଦୁଃସାହସିକ ପଦକ୍ଷେପ ସେମାନେ ନେଇଥିବାର ଜଣାଯାଏ ।

ଆମର ପ୍ରାଚୀନ ଦଣ୍ଡ ବିଧାନ ବ୍ୟବସ୍ଥାରେ ଏକ ନିର୍ଦ୍ଦିଷ୍ଟ ଅପରାଧ ପାଇଁ ଭିନ୍ନ ଭିନ୍ନ ବ୍ୟକ୍ତିମାନଙ୍କ ନିମନ୍ତେ ଭିନ୍ନ ଭିନ୍ନ ଦଣ୍ଡ ବ୍ୟବସ୍ଥା ଥିଲା । ସମ ପରିମାଣ ଅପରାଧ ପାଇଁ ଶାସ୍ତ୍ରଜ୍ଞାନ ବିବର୍ଜିତ ଅଜ୍ଞାନ ଶୂଦ୍ରଟିଏ ଯେଉଁ ପରିମାଣରେ ଦଣ୍ଡିତ ହେଉଥିଲା, ବିଭିନ୍ନ ଶାସ୍ତ୍ରଜ୍ଞାନର ଅଧିକାରୀ ବ୍ରାହ୍ମଣଟିଏ ତା' ଠାରୁ ଅଧିକ କଠିନ ଦଣ୍ଡ ପାଉଥିଲା । ଏହାର ଏକ କ୍ଷୀଣ ପ୍ରତିଫଳନ ସାମ୍ପ୍ରତିକ ଯୁଗରେ ବାଳ ଅପରାଧୀ, ମାନସିକ ବିକୃତି ଥିବା ଅପରାଧୀ ଓ ବୃଦ୍ଧ ଅପରାଧୀ ମାନଙ୍କୁ ମୃତ୍ୟୁ ଦଣ୍ଡରେ ଦଣ୍ଡିତ କରା ନଯିବା ପାଇଁ ମିଳିତ ଜାତିସଂଘରେ ଯେଉଁ ନିର୍ଦ୍ଧାରିତ ନିୟମ ରହିଛି ସେଥିରେ ଅନୁଭୂତ ହୁଏ ।

ଜଣେ ବ୍ୟକ୍ତି ସମ୍ପୂର୍ଣ୍ଣ ବ୍ୟକ୍ତିଗତ ସ୍ୱାର୍ଥସିଦ୍ଧି ପାଇଁ ସୁସ୍ଥ ମସ୍ତିଷ୍କରେ ପୂର୍ବ ପ୍ରସ୍ତୁତି ଅନୁସାରେ ଜଣକୁ ହତ୍ୟା କରିବା, ଆଉଜଣେ ଆତ୍ମରକ୍ଷା ପାଇଁ ନିରୁପାୟ ହୋଇ ଶତ୍ରୁକୁ ହତ୍ୟା କରିବା କିମ୍ବା ଅନ୍ୟର ଜୀବନରକ୍ଷା କରିବା ପାଇଁ ହତ୍ୟା କରିବା ଭିତରେ ନିଶ୍ଚୟ ପାର୍ଥକ୍ୟ ରହିଛି ଏକଥା ସମସ୍ତେ ଉପଲବ୍ଧି କରିପାରିବେ । ଏଠାରେ ରାଜକ୍ଷମାର ପ୍ରଶ୍ନ ଉଠିଲେ ଯେକୌଣସି ବ୍ୟକ୍ତି କାହାକୁ ରାଜକ୍ଷମା ଦିଆଯିବା ଉଚିତ୍ ସେ ସମ୍ପର୍କରେ ସ୍ପଷ୍ଟ ମତ ଦେଇପାରିବ । ଦରିଦ୍ର, ନିରନ୍ନ, ସର୍ବହରା ଜନତାର କଲ୍ୟାଣକୁ ଜୀବନର ବ୍ରତ ରୂପେ ବରଣ କରି ନେଇଥିବା ନକ୍ସଲନେତା ସ୍ୱର୍ଗତ ନାଗଭୂଷଣ ପଟ୍ଟନାୟକଙ୍କୁ ତତ୍କାଳୀନ ରାଷ୍ଟ୍ରପତି ରାଜକ୍ଷମା ଦେଇ ଫାଶୀଦଣ୍ଡରୁ ମୁକ୍ତ କରିବା ଇତିହାସରେ ଏକ ସମୁଜ୍ଜ୍ୱଳ ଅଧ୍ୟାୟ । ଏହାଛଡ଼ା ବାଲ୍ୟକାଳରୁ ଅତ୍ୟାଚାରିତା, ଶାରୀରିକ ଓ ମାନସିକ ସ୍ତରରେ ନିର୍ଯ୍ୟାତିତା ଫୁଲନ୍‌ଦେବୀ ସମାଜ ପ୍ରତି ପ୍ରତିଶୋଧ ପରାୟଣା ହୋଇ ଅଜସ୍ର ହତ୍ୟାକାଣ୍ଡ ଘଟାଇଥିଲା । ତଥାପି ତାର ପରିସ୍ଥିତିକୁ ଅନୁଧ୍ୟାନ କରି ତାକୁ ରାଜକ୍ଷମା ଦେବା ନିଶ୍ଚୟ ମହତ୍ ବିଚାର ଧାରାର ପରିଚାୟକ । ରାଜକ୍ଷମାର ଇତିହାସରେ ଏହା ମଧ୍ୟ ଏକ ମହାନ୍ ଉଦାହରଣ । ଆମ ଭାରତୀୟ ପିଙ୍ଗଳ କୋର୍ଡର୍ ମୂଳସୂତ୍ର ହେଉଛି ହଜାରେ ଦୋଷୀ ପଛେ ଖଲାସ ହୋଇ ଯାଆନ୍ତୁ, ଗୋଟିଏ ନିର୍ଦ୍ଦୋଷୀ ଦଣ୍ଡ ନ ପାଉ । ଏହାର ସୁଯୋଗ ନେଇ ଅନେକ ଜଘନ୍ୟ ହତ୍ୟାକାରୀ କିପରି ପ୍ରମାଣ ଅଭାବରୁ ଖଲାସ ପାଇ ଯାଉଛନ୍ତି ସେ ତ ଭିନ୍ନ ପ୍ରସଙ୍ଗ । ଅପରାଧ ତୁଳନାରେ ଦଣ୍ଡ ବ୍ୟବସ୍ଥା କୋହଳ ହେଲେ ଅପରାଧୀମାନେ ନୂଆ ନୂଆ ଅପରାଧ କରିବା ପାଇଁ ଉତ୍ସାହିତ ହେବେ ।

.........................................

ସମାଜରେ ନୂଆ ନୂଆ ଅପରାଧୀ ସୃଷ୍ଟି ହେବେ। ଦେଶରୁ ଶାନ୍ତି ଶୃଙ୍ଖଳା ବ୍ୟାହତ ହେବ। ସମ୍ପ୍ରତି ଭୋଗବାଦୀ ଚେତନାରେ ଲୋକଚରିତ୍ର ଯେଉଁଭଳି ଧୀରେ ଧୀରେ କଳୁଷିତ ହେବାରେ ଲାଗିଛି, ଯେପରି ତାର ନୈତିକତାର ମାନଦଣ୍ଡ ହ୍ରାସ ପାଉଛି। ଦେଶରେ ଆଧ୍ୟାତ୍ମିକ ସଙ୍କଟ ସୃଷ୍ଟି ହୋଇଛି। ସେ ପରିସ୍ଥିତିରେ କ୍ଷମାଦେଇ ଚାରିତ୍ରିକ ପରିବର୍ତ୍ତନ ଆଣିବା ପରିକଳ୍ପନା କେତେଦୂର ଯଥାର୍ଥ, ତାହା ଚିନ୍ତାର ବିଷୟ। ସେଇଥିପାଇଁ ଗୋଟିଏ ଶିଶୁ, ଜଣେ ଗର୍ଭବତୀ ମହିଳା ଓ ତାଙ୍କ ସ୍ୱାମୀକୁ ହତ୍ୟାକରି ବ୍ରହ୍ମପୁର ଜେଲ୍‌ରେ ଗତ ଅଗଷ୍ଟ ୨୩ ତାରିଖରେ ଫାଶୀଦଣ୍ଡ ପାଇବାକୁ ଥିବା ଦୟାନିଧିକୁ ରାଜକ୍ଷମା ଦେଇ, ତାର ନିଶ୍ଚିତ ପରିବର୍ତ୍ତିତ ଜୀବନଶୈଳୀ ଉପରେ ବିଶ୍ୱାସ ସ୍ଥାପନ କରାଯାଉଥିବା ଏକ ବିତର୍କର ବିଷୟ ହୋଇପଡ଼ିଛି। ସମୟର କଷଟି ପଥରରେ ଏ ଘଟଣା କି ରୂପ ନେବ ତାହା ଦେଖିବା ପାଇଁ ଅପେକ୍ଷା ରହିଲା।

ଅନୁପମ ଭାରତ

୧୦ ସେପ୍‌ଟେମ୍ବର, ୨୦୦୩

# ଅବକ୍ଷୟ, ମୂଲ୍ୟବୋଧ ଓ ବିବାହ

ସମାଜକୁ ଶୃଙ୍ଖଳିତ, ମାର୍ଜିତ ଓ ମର୍ଯ୍ୟାଦାବନ୍ତ କରିବାର ସର୍ବପ୍ରାଚୀନ ଅନୁଷ୍ଠାନ ହେଲା ବିବାହ। ନାରୀ ଓ ପୁରୁଷଙ୍କୁ ଏକତ୍ର ବସବାସ କରିବା ପାଇଁ ଏ ଅନୁଷ୍ଠାନ ସମ୍ଭ୍ରମ ସ୍ୱୀକୃତି ପ୍ରଦାନ କରିଥାଏ। ଯଦିଓ ଏହା ବ୍ୟକ୍ତିର ନିଛକ ଜୈବିକ ଆବଶ୍ୟକତାର ଭିତ୍ତିଭୂମି ଉପରେ ପ୍ରତିଷ୍ଠିତ ତଥାପି ବେଦମନ୍ତ୍ରପାଠ, ପବିତ୍ର ଚେତନା ବାଣରୋଷଣି ଓ ଭୋଜି ଭାତର ମହୋତ୍ସବ ଭିତରେ ଏ ପ୍ରସଙ୍ଗକୁ ସଂପୂର୍ଣ୍ଣ ଉହ୍ୟ ରଖି ଏହାକୁ ଏକ ପବିତ୍ର ଧର୍ମାନୁଷ୍ଠାନ ରୂପେ ଗ୍ରହଣ କରାଯାଏ।

ଖ୍ରୀଷ୍ଟିୟାନ୍‌ମାନଙ୍କର ବିବାହ କାର୍ଯ୍ୟ ଚର୍ଚ୍ଚ ବ୍ୟତୀତ ଅନ୍ୟକୌଣସି ସ୍ଥାନରେ ହେବାକୁ ତାଙ୍କ ଧର୍ମ ଅନୁମତି ଦିଏ ନାହିଁ। ଇସଲାମ ଧର୍ମରେ ମସ୍‌ଜିଦ୍‌ରେ ପ୍ରବେଶ କରିବା ପାଇଁ ନାରୀମାନଙ୍କ ପକ୍ଷରେ କଟକଣା ରହିଛି; ତେଣୁ ନିକାହ (ବିବାହ) ପୂର୍ବରୁ ନିଜଗୃହରେ କନ୍ୟାଟି ଏକ ସ୍ୱତନ୍ତ୍ର ପ୍ରାର୍ଥନା କରିବାର ବିଧି ରହିଛି। ବିବାହ ପରେ ବରବଧୂ ଯେତେବେଳେ ଗୃହପ୍ରବେଶ କରନ୍ତି ବରପିତା କିମ୍ବା ମାତା କୋରାନ୍ ସରିଫକୁ ଉପରକୁ ଟେକି ଧରି ସେମାନଙ୍କୁ ସ୍ୱାଗତ କରନ୍ତି। ହିନ୍ଦୁ ଧର୍ମରେ ତ ବିବାହ ସବୁଠାରୁ ବଳି ବଡ଼ ଧାର୍ମିକ ଅନୁଷ୍ଠାନ। ମହାପ୍ରସାଦ ନିର୍ବନ୍ଧଠାରୁ ବରବଧୂ ଦାମ୍ପତ୍ୟ ଜୀବନ ଆରମ୍ଭ କରିବା ପର୍ଯ୍ୟନ୍ତ ପ୍ରତିଟି ମୁହୂର୍ତ୍ତ ପୁରୋହିତର ମନ୍ତ୍ରପାଠ, ପୂଜା ଆରାଧନା ଓ ହୋମ ଯଜ୍ଞର ପବିତ୍ର ମାନସିକତା ନେଇ ସଂପନ୍ନ କରାଯାଇଥାଏ। ବିଶ୍ୱର ପ୍ରାୟ ସକଳ ସଭ୍ୟତା ବିବାହ ସ୍ୱର୍ଗରେ ହୁଏ ବୋଲି ବିଶ୍ୱାସ କରନ୍ତି। ପୃଥିବୀରେ କେବଳ ଏହାକୁ ଉତ୍ସବ ରୂପରେ ପାଳନ କରାଯାଏ। ହିନ୍ଦୁଧର୍ମ ଦର୍ଶନରେ ବିଶ୍ୱାସ କରାଯାଏ ପ୍ରଜାପତି ବ୍ରହ୍ମା ପ୍ରତୀକାତ୍ମଭାବେ ଗୋଟିଏ ବରପତ୍ର ସହ ଗୋଟିଏ ଓସ୍ତ ପତ୍ରକୁ ଯୋଡ଼ି ଯୋଡ଼ି ଭୂପୃଷ୍ଠକୁ ନିକ୍ଷେପ କରୁଥାଆନ୍ତି। ସେହି ଅନୁସାରେ ପୃଥିବୀ ପୃଷ୍ଠରେ ପୁରୁଷ ସ୍ତ୍ରୀର ସମ୍ପର୍କ ଯୋଡ଼ି ହୋଇଯାଏ। ଏ ସଂପର୍କ ପୁଣି ଗୋଟିଏ ଜନ୍ମର ନୁହେଁ ଜନ୍ମ-ଜନ୍ମାନ୍ତର ସଂପର୍କ।

ଆଜିର ଉପଭୋକ୍ତା ମାନସିକ ପ୍ରବଣ ସମାଜରେ ବିବାହ ଶବ୍ଦ ତାର ପ୍ରାସଙ୍ଗିକତା ହରାଇବାକୁ ବସିଲାଣି। ଆଇଏଏସ୍ ଅଫିସରଟିଏ ମହିଳା ଆଇଏସ୍ ଅଫିସରକୁ ବିବାହ କରିବାକୁ ଚାହୁଁଥିବା ବେଳେ ଡାକ୍ତରଟିଏ ଡାକ୍ତରାଣୀକୁ, ଅଧ୍ୟାପକଟିଏ ଅଧ୍ୟାପିକା କିମ୍ବା ଶିକ୍ଷକଟିଏ ଶିକ୍ଷୟିତ୍ରୀକୁ ବିବାହ କରି ନିଜର ଆର୍ଥିକ ସ୍ଥିତି ସୁଦୃଢ଼ କରିବାକୁ ଚାହୁଁଛି। ଏହାହିଁ ସାଂପ୍ରତିକ ସମାଜର ବିଡ଼ମ୍ବନା।

ବିବାହ ପାଇଁ ପ୍ରାର୍ଥୀ ଓ ପ୍ରାର୍ଥିନୀଙ୍କ ଅନ୍ୟାନ୍ୟ ଦକ୍ଷତା ଓ ସାମର୍ଥ୍ୟ ପ୍ରତି କମ୍ ଗୁରୁତ୍ୱ ଦିଆଯାଇ ଆର୍ଥିକ ସୁରକ୍ଷା କେତେ ପରିମାଣରେ ମିଳୁଛି ତା ଉପରେ ପ୍ରାଧାନ୍ୟ ଦିଆଯାଉଛି। ବରପାତ୍ରର ଯୋଗ୍ୟତା ଅନୁସାରେ ଯୌତୁକର ପରିମାଣ ନିର୍ଦ୍ଧାରିତ ହେଉଛି। କନ୍ୟାଟି ଯଦି ରୋଜଗାରକ୍ଷମ ତାହେଲେ କନ୍ୟାପିତାକୁ କିଛି ରିହାତି ମିଳୁଛି। ବରପିତା ମଧ୍ୟ କନ୍ୟାପିତାର ଆର୍ଥିକ ସ୍ୱଚ୍ଛଳତାକୁ ଦୃଷ୍ଟିରେ ରଖି ପ୍ରସ୍ତାବ ସଂପର୍କକୁ ଚିନ୍ତା କରୁଛି। ଯୁବକଟିର ଯଦି ନିଜର କୌଣସି ସ୍ଥାୟୀ ରୋଜଗାର ପନ୍ଥା ନାହିଁ, ସେ ଚାକିରି କରୁଥିବା ଓ ତାଠାରୁ ଅଧିକ ବୟସ୍କା କନ୍ୟା ହେଲେ ସୁଦ୍ଧା ବିବାହ କରିବାକୁ କୁଣ୍ଠାବୋଧ କରୁନାହିଁ, ବିବାହର ପରିଭାଷା ଯେଉଁଠି କେବଳ ଆର୍ଥିକ ସୁରକ୍ଷା, ସେଠାରେ ସ୍ନେହ-ପ୍ରେମ ଅନୁରାଗ ଆଦି ଦାମ୍ପତ୍ୟ ଜୀବନର ମଧୁର ଅନୁଭବ ଆଶା କରିବା ବିଡ଼ମ୍ବନା।

ଆଜିକାଲି ବିବାହ ପୂର୍ବବର୍ତ୍ତୀ ଦେବାନେବା ସଂପର୍କରେ ଯେଉଁଭଳି ଲଜ୍ଜାହୀନ ଚୁକ୍ତି ବା ସଉଦା କରା ହେଉଛି, ତାହା ଜମିଜମା, ଗୃହପାଳିତ ପଶୁ କିମ୍ବା ବ୍ୟାବସାୟିକ ସାମଗ୍ରୀର ଚୁକ୍ତିଠାରୁ ବଳି ପଡ଼ୁଛି। ଏହି ଚୁକ୍ତିନାମାରେ ଯଦି କିଛି ବ୍ୟତିକ୍ରମ ସୃଷ୍ଟି ହେଉଛି ତାହେଲେ କନ୍ୟାରୁ ନବବଧୂ ପାଲଟିଥିବା ନାରୀଟି ଉପରେ ସବୁ ବିପର୍ଯ୍ୟୟ ଅଜାଡ଼ି ହୋଇ ପଡ଼ୁଛି।

କେତେକ ଉଚ୍ଚଶିକ୍ଷିତ ଓ ଉଚ୍ଚପଦପଦବୀରେ ଥିବା ବରପାଇଁ ବରପିତାମାନେ ନିଜର ପୁତ୍ରର ଶିକ୍ଷା ଦୀକ୍ଷା ପାଖରୁ ନିଯୁକ୍ତି ପର୍ଯ୍ୟନ୍ତ ଯେତେ ଅର୍ଥ ବ୍ୟୟ କରିଥାନ୍ତି ସେ ସବୁ କନ୍ୟାପିତାଠାରୁ ଆଦାୟ କରିବା ମାନସିକତାରେ ଥା'ନ୍ତି। ଏହି ଅରୁଚିକର ବକ୍ତବ୍ୟ ପ୍ରକାଶ୍ୟ ଭାବରେ ପ୍ରଦାନ କରିବାକୁ ସେମାନେ ଲଜ୍ଜାବୋଧ ନକରି ବରଂ ଗୌରବ ଜନକ ବୋଲି ମନେକରନ୍ତି। ଆଉ କିଛି ବେକାର ଯୁବକଙ୍କ ପିତାମାତା କନ୍ୟା ପିତାଠାରୁ ମୋଟା ଅଙ୍କର କିଛି ଅର୍ଥ ଆଣି ନିଜ ବେକାର ସନ୍ତାନର ଥଇଥାନ କରିଥାନ୍ତି। କେତେକ ପ୍ରଭାବଶାଳୀ କନ୍ୟାପିତା ନିଯୁକ୍ତି ପାଇ ନଥିବା ଉଚ୍ଚଶିକ୍ଷିତ ଓ ପ୍ରତିଭାବାନ୍ ଯୁବକଙ୍କୁ ଚାକିରିର ପ୍ରଲୋଭନ ଦେଖାଇ ନିଜର

ଅଯୋଗ୍ୟ କନ୍ୟାସହ ବିବାହ କରାଇ ଦିଅନ୍ତି। ପ୍ରତିଶ୍ରୁତି ଅନୁସାରେ ବର ଚାକିରିଟିଏ ପାଇଲା ତ ଦାମ୍ପତ୍ୟ ଜୀବନ ସୁରୁଖୁରୁ ଚାଲେ ଅନ୍ୟଥା ସର୍ବଦା ପରସ୍ପର ଭିତରେ ଚାପା ଉତ୍ତେଜନା ସୃଷ୍ଟି ହୋଇ ସଂପର୍କରେ ଫାଟ ସୃଷ୍ଟି ହୁଏ। ଏଇଭଳି ଦୁର୍ବଳ ବୁନିୟାଦ ଉପରେ ଗଠିତ ହୋଇଥିବା ସଂପର୍କର ସୌଧର ଯେ ପ୍ରତିମୁହୂର୍ତ୍ତରେ ଭୁଷୁଡ଼ି ପଡ଼ିବାର ଆଶଙ୍କା ରହିଛି ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ।

ବିବାହକୁ ଜନ୍ମ ଜନ୍ମାନ୍ତରର ବନ୍ଧନ ବୋଲି ମାନିବାକୁ ଆଜିର ଯୁବପିଢ଼ି ପ୍ରସ୍ତୁତ ନୁହଁନ୍ତି। ଦିନଥିଲା ଭାରତୀୟମାନେ ଜୀବନସାରା ଗୋଟିଏ ସ୍ୱାମୀ ବା ସ୍ତ୍ରୀକୁ ନେଇ କିପରି ସନ୍ତୁଷ୍ଟ ରହନ୍ତି ବୋଲି ପ୍ରଶ୍ନ କରି ଆଶ୍ଚର୍ଯ୍ୟ ହେଉଥିଲେ ବୈଦେଶିକ ନାଗରିକ। ଆଜି କିନ୍ତୁ ସେ ସବୁ ଇତିହାସର ଅଧ୍ୟାୟ ହେବାକୁ ବସିଲାଣି। ଅଧିକାଂଶ ସ୍ୱାମୀ ସ୍ତ୍ରୀଙ୍କ ସଂପର୍କରେ ଅଶାନ୍ତି, ଅସନ୍ତୋଷ, ବିଶୃଙ୍ଖଳା ଓ ବିସ୍ଫୋରଣ। ବିବାହ କେବଳ ଗୋଟିଏ ପରିବାରରେ ଏକତ୍ର ରହିବା ପାଇଁ ଏକ ସାଲିସ୍ ବା କମ୍ପ୍ରମାଇଜ୍ ବୋଲି ସେମାନେ ଅନୁଭବ କରୁଛନ୍ତି।

ପାଶ୍ଚାତ୍ୟଶିକ୍ଷା ସଭ୍ୟତା ଅନୁରାଗୀ କେତେକ ଯୁବକ ଯୁବତୀ ଏବେ ଚୁକ୍ତି ବିବାହ ବା କଣ୍ଟ୍ରାକ୍ଟ ମ୍ୟାରେଜରେ ଆସ୍ଥା ସ୍ଥାପନ କଲେଣି। ଏ ବିବାହ ଅନୁସାରେ ଏକ ନିର୍ଦ୍ଦିଷ୍ଟ ସମୟ ପର୍ଯ୍ୟନ୍ତ ଏକତ୍ର ରହିବା ପାଇଁ ଯୁବକ ଯୁବତୀ ଚୁକ୍ତିବଦ୍ଧ ହୁଅନ୍ତି ଓ ସେହି କାର୍ଯ୍ୟକାଳ ପରିସମାପ୍ତି ହୋଇଗଲେ ସେମାନେ ପୁଣି ମୁକ୍ତ ହୋଇ ଯାଆନ୍ତି।

ଏସବୁ ବ୍ୟତୀତ ସାଂପ୍ରତିକ ଯୁଗୀୟ ଆବଶ୍ୟକତାକୁ ନେଇ ଯୁବକ ଓ ଯୁବତୀମାନଙ୍କ ପାଇଁ ପ୍ରେମ ବିବାହର ପରିସର ପ୍ରଶସ୍ତ ହୋଇ ପଡ଼ିଛି। ଯେଉଁଠି ଏ ବିବାହ ଅନାବିଳ ପ୍ରେମ ଓ ପ୍ରୀତିର ଭିତ୍ତିଭୂମି ଉପରେ ଗଠିତ ତାହା ସଫଳ ହୁଏ, କିନ୍ତୁ ଯେଉଁଠି ନିଛକ ଦେହଭୋଗର ବାସନା ଉପରେ ଏ ସଂପର୍କ ପ୍ରତିଷ୍ଠିତ ଆବଶ୍ୟକତା ପରିପୂର୍ଣ୍ଣ ହୋଇଗଲେ ସଂପର୍କ ଆପେ ଆପେ ଶିଥିଳ ହୋଇପଡ଼େ। ଛାଡ଼ପତ୍ରରେ ଏ ସମସ୍ୟାର ସମାଧାନ ହୁଏ।

ବିବାହକୁ ଦିନେ ବଂଶ ରକ୍ଷାର ପବିତ୍ର କର୍ତ୍ତବ୍ୟ ରୂପେ ମର୍ଯ୍ୟାଦା ଦିଆଯାଉଥିଲା। 'ପୁତ୍ରାର୍ଥେ କ୍ରିୟତେ ଭାର୍ଯ୍ୟା' ଉକ୍ତି ମଧ୍ୟରେ ସଂଯମ-ପିଣ୍ଡିତ ଭାରତୀୟ ଜୀବନ ଦର୍ଶନର ଯେଉଁ ମହାର୍ଘ ରୂପରେଖ ମିଳେ ତାହା ଅନ୍ୟତ୍ର ଦୁର୍ଲଭ। ଆଜିର ଜନ୍ମନିୟନ୍ତ୍ରଣ ଯୁଗରେ ବିବାହର ପରିଭାଷା ବଦଳି ଗଲାଣି। ଅଗ୍ନିକୁ ସାକ୍ଷୀ ରଖି ବେଦମନ୍ତ୍ରର ପ୍ରଣବ ଧ୍ୱନି ଭିତରେ ବିବାହର ପବିତ୍ର ଉଦ୍ଦେଶ୍ୟ ଚରିତାର୍ଥ ନିମନ୍ତେ ଶପଥପାଠ କରିଥିବା ଦମ୍ପତ୍ତି ପରସ୍ପର ଏକ ସାଲିସ ବିହୀନ ଜୀବନ ବିତାଉଛନ୍ତି।

ଗୋଟିଏ ପକ୍ଷ ଅନ୍ୟପକ୍ଷର ସବୁ ଘୃଣ୍ୟ, ନିର୍ଯ୍ୟାତନା, ଅବିଶ୍ୱାସ ଓ ସନ୍ଦେହକୁ ନେଇ ବଞ୍ଚି ରହିଛି।

ଯନ୍ତ୍ର ଯୁଗ ମଣିଷକୁ ଯେତେ ଯାନ୍ତ୍ରିକ ପ୍ରାଚୁର୍ଯ୍ୟ ଦେଲେ ସୁଦ୍ଧା ମଣିଷର ଯେ ଏକ ମାନବୀୟ୍ ଆବେଦନ ରହିଛି ଏହା ଅସ୍ୱୀକାର କରିହେବ ନାହିଁ। ଏ ଆବେଦନ ପ୍ରେମ, ପ୍ରୀତି, ଅନୁରାଗ, ସ୍ନେହ ସଦିଚ୍ଛା, ଦୟା, କ୍ଷମା, ସେବା, ସମଭାବ, ସହଯୋଗ ଓ ସହାନୁଭୂତିର ଭିତ୍ତିଭୂମି ଉପରେ ପ୍ରତିଷ୍ଠିତ। ପରିବାର ହେଉଛି ଏହାର ରନ୍ଧନଶାଳା, ଯାହାକୁ ଇନ୍ଧନ ଯୋଗାଏ ବିବାହ। ଯେତେଦିନ ପର୍ଯ୍ୟନ୍ତ ମଣିଷ ବିବାହର ପବିତ୍ର ପରିଭାଷାକୁ ସମ୍ମାନ ଦେଇ ଆସିଥିବ ସେ ପର୍ଯ୍ୟନ୍ତ ଏକରୁଚିଶୀଳ ଶୃଚୀମନ୍ତ ସମାଜ ତିଷ୍ଠି ରହିଥିବ। ଅନ୍ୟଥା ଏକ ଆଦିମ ପ୍ରବୃତ୍ତିର ଆଶ୍ଲେଷରେ ସମାଜ ଫେରିଯିବ ସେହି ପ୍ରାଗ୍ ଐତିହାସିକ ଯୁଗକୁ।

ସାପ୍ତାହିକ - ସମାଜ

ଜୁନ୍ ୩, ୨୦୦୫

# ଶିଶୁ ନିର୍ଯ୍ୟାତନା - ଏକ ସାମାଜିକ କଳଙ୍କ

ସକଳ ସୁଖ ସ୍ୱାଚ୍ଛନ୍ଦ୍ୟ, ଐଶ୍ୱର୍ଯ୍ୟ ଓ ପ୍ରାଚୁର୍ଯ୍ୟରେ ଭରପୂର ହେଲେ ସୁଦ୍ଧା ସ୍ୱର୍ଗ ରାଜ୍ୟରେ ଶିଶୁ ନଥିବାରୁ ଦେବତାମାନେ କୁଆଡ଼େ ବିଭିନ୍ନ ଆଳ ଦେଖାଇ ମର୍ତ୍ତ୍ୟଭୂମିରେ ଅବତୀର୍ଣ୍ଣ ହୁଅନ୍ତି। ଶିଶୁମାନଙ୍କୁ ଭଗବାନଙ୍କର ପ୍ରତିରୂପ ବୋଲି ଗ୍ରହଣ କରାଯାଏ। ସେମାନେ ସକଳ ପାପ ପୁଣ୍ୟର ଊର୍ଦ୍ଧ୍ୱରେ। ସେମାନଙ୍କର ସର୍ବାଙ୍ଗୀନ ବିକାଶ ପାଇଁ ସମାଜ ସବୁ ପ୍ରକାର ସାହାଯ୍ୟ ସହଯୋଗ ଓ ସହାନୁଭୂତି ଯୋଗାଇଦେବା ଆବଶ୍ୟକ। ସ୍ନେହ, ଶ୍ରଦ୍ଧା, ଆଦର ଓ ମମତା ସେମାନଙ୍କର ଜନ୍ମସିଦ୍ଧ ଅଧିକାର। କେବଳ ସେତିକି ନୁହେଁ, ସମାଜର ଅନ୍ୟାନ୍ୟ ସଦସ୍ୟଙ୍କ ଭଳି ସେମାନେ ମଧ୍ୟ ସମ୍ମାନ ଓ ମର୍ଯ୍ୟାଦାର ସହ ବଞ୍ଚିବା ପାଇଁ ହକ୍‌ଦାର।

ସାଂପ୍ରତିକ ଯୁଗରେ ମାନବିକତା ଓ ମାନବିକ ଅଧିକାର ସଂପର୍କରେ ଘଣ୍ଟା ଘଣ୍ଟା ସମୟ, ତର୍କ ଆଲୋଚନା ଓ ଭାଷଣ ବାଜିରେ କଟାଉଥିବା ଆମେ ଶିଶୁମାନଙ୍କ ପ୍ରତି କେତେ ଦୂର ସହାନୁଭୂତିଶୀଳ ହୋଇପାରିଛେ ? ସ୍ଥଳବିଶେଷରେ ପିତାମାତା ମଧ୍ୟ ନିଜ ଜନ୍ମିତ ସନ୍ତାନ ପ୍ରତି ଶୃଙ୍ଖଳା ଓ ଶାସନ ନାଁରେ କେବଳ ଅତ୍ୟାଚାର ହିଁ କରି ଚାଲିଥାନ୍ତି। କଠିନ ଅନୁଶାସନ ଭିତରେ ରହି ତାର ବାଳ ସୁଲଭ ସକଳ କୋମଳ ଭାବନା ଧୀରେ ଧୀରେ ରୁକ୍ଷ ପାଲଟି ଯାଉଛି। ପାଠ୍ୟ ପୁସ୍ତକ, ହୋମ୍ ଓ୍ୱାର୍କ, ଟିଉସନ୍ ଶିକ୍ଷକଙ୍କ କଡ଼ା ତାଗିଦ୍ ଅଭିଭାବକମାନଙ୍କ ଉଚ୍ଚାଭିଳାଷର ଚକ୍ରବ୍ୟୂହ ଭିତରେ ସେ ଏକ ରକମ ନିର୍ଯ୍ୟାତିତର ଜୀବନ ବିତାଉଛି। ମନସ୍ତତ୍ତ୍ୱବିଦ୍‌ମାନେ କହନ୍ତି ଶୈଶବର ସୁଖସ୍ମୃତି ବ୍ୟକ୍ତିକୁ ପରବର୍ତ୍ତୀ ଜୀବନରେ ଅନେକ ଗଠନ ମୂଳକ କାର୍ଯ୍ୟ କରିବା ପାଇଁ ଉତ୍‌ପ୍ରେରିତ କରେ। ଲାଞ୍ଛିତ ଓ ଅତ୍ୟାଚାରିତ ଶୈଶବ ପରିଣତ ବୟସରେ ନାନା ଅନୁଚିତ ଅଭିଳାଷ ପୋଷଣ କରି ସମାଜ ପାଇଁ ଅଭିଶାପ ହୋଇପଡ଼େ। ସୁସ୍ଥ ମାନସିକତା ନେଇ ସେ ନିଜକୁ ଅବସ୍ଥାପିତ କରିପାରେ ନାହିଁ। ଗଠନ ମୂଳକ ଚିନ୍ତାଧାରା ପରିବର୍ତ୍ତେ ଅହରହ ଏକ ସ୍ୱାର୍ଥସର୍ବସ୍ୱ ଧ୍ୱଂସାତ୍ମକ ମନୋବୃତ୍ତି ତାର ବଳବତ୍ତର ହୋଇରହେ।

ଆମ ସମାଜରେ ଶିଶୁ ନିର୍ଯ୍ୟାତନା ଏକ ସାଂପ୍ରତିକୀ ପ୍ରସଙ୍ଗ। ଅନ୍ତତଃ ବିଗତ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧ ଆରମ୍ଭ ହେବା ପର୍ଯ୍ୟନ୍ତ ଶିଶୁମାନଙ୍କୁ ପର୍ଯ୍ୟାପ୍ତ

ସ୍ୱାଧୀନତା ମିଳୁଥିଲା । ସକଳ ଜଂଜାଳ ଦାୟିତ୍ୱବୋଧ ଓ ଅନୁଶାସନରୁ ମୁକ୍ତ ରହି ଜୀବନକୁ ସଂପୂର୍ଣ୍ଣ ଭାବରେ ସେମାନେ ଉପଭୋଗ କରୁଥିଲେ । ନାନାବିଧ ଅନୁଭୂତିସିକ୍ତ ବାଲ୍ୟସ୍ମୃତି ଭବିଷ୍ୟତରେ ଭଲ ମଣିଷଟିଏ ଗଢ଼ି ତୋଳିବା ପାଇଁ ସାହାଯ୍ୟ କରୁଥିଲା । ଆଜିର ଶିଶୁ ଭଳି ପିତାମାତା ଓ ଆତ୍ମୀୟ ସ୍ୱଜନଙ୍କ ପ୍ରତି ସେମାନଙ୍କର ନୀରବ ବିଦ୍ରୋହ ନଥିଲା । ଫଳତଃ ପରିଣତ ବୟସ ପର୍ଯ୍ୟନ୍ତ ସେମାନେ ପିତାମାତାଙ୍କ ସହ ଭାବସିକ୍ତ ଓ ଆବେଗମୟ ସଂପର୍କ ରଖିପାରୁ ନଥିଲେ । ନିପୀଡ଼ିତ, କଠୋର ଅନୁଶାସନରେ ଅନୁବନ୍ଧିତ ଶୈଶବ ଯେ ମଣିଷକୁ ସ୍ୱାର୍ଥ ଓ ବ୍ୟକ୍ତି କେନ୍ଦ୍ରିକ କରିଦିଏ, ଏଥିରେ ସନ୍ଦେହ ନାହିଁ । ଏହି ମାନସିକତା ହିଁ ବୃଦ୍ଧ ପିତାମାତାଙ୍କୁ ଜରାଶ୍ରମ କିମ୍ବା ଚାକର ବାକର ଦାୟିତ୍ୱରେ ଛାଡ଼ି ଦେଇ ନିଶ୍ଚିନ୍ତରେ ରହିପାରେ ।

ଭାରତ ଭଳି ଏକ ବିକାଶଶୀଳ ରାଷ୍ଟ୍ରରେ ଅର୍ଦ୍ଧାଧିକ ଜନତା ଦାରିଦ୍ର୍ୟର ସୀମାରେଖା ତଳେ ରହୁଥିବାରୁ ୮ ରୁ ୧୪ ବର୍ଷ ବୟସ୍କ ଅନେକ ଶିଶୁ ନିଜ ପେଟ କଥା ନିଜେ ଚିନ୍ତା କରନ୍ତି । କେତେକ ବିପଜ୍ଜନକ ଶିଳ୍ପ ପ୍ରତିଷ୍ଠାନମାନଙ୍କରେ ସେମାନଙ୍କୁ ନିଯୁକ୍ତି ଦିଆଯାଇଥାଏ । ସେମାନଙ୍କ ପରିଶ୍ରମ ଅନୁଯାୟୀ ପାରିଶ୍ରମିକ ଦିଆଯାଏ ନାହିଁ । କେତେକ ଦଲାଲଙ୍କ ଦ୍ୱାରା ଶିଶୁ ଶ୍ରମିକ ମାନଙ୍କୁ ପ୍ରତିବେଶୀ ରାଜ୍ୟମାନଙ୍କୁ ପଠାଇ ଦିଆଯାଏ । କନ୍ଧମାଳ ଜିଲ୍ଲାର ମକଦ୍ଦମ ପ୍ରଧାନ ଏବେ ଖୋଲା ଖୋଲି ଭାବରେ ପୋଲିସ୍ ଆଗରେ ଯେଉଁ ଚାଞ୍ଚଲ୍ୟକର ବୟାନ ଦେଇଛି ତାହା ପ୍ରକୃତରେ ସମାଜ ପାଇଁ କଳଙ୍କ ।

ଭାରତୀୟ ଶିଶୁ ଶ୍ରମିକ ଆଇନ୍ ଅନୁସାରେ ଏସବୁର ଉଚ୍ଛେଦ ପାଇଁ ବ୍ୟବସ୍ଥା ରହିଥିଲେ ସୁଦ୍ଧା ଜନସାଧାରଣଙ୍କ ସହଯୋଗ ଅଭାବରୁ ସମ୍ପୂର୍ଣ୍ଣ ଫଳବତୀ ହୋଇପାରୁନାହିଁ । ୧୪ ବର୍ଷରୁ କମ୍ ଶିଶୁମାନଙ୍କୁ ଅନେକ ଲୋକ ଘରୋଇ ଚାକର ରୂପେ ନିଯୁକ୍ତି ଦୋକୁ ପସନ୍ଦ କରନ୍ତି । ସାଧାରଣତଃ କମ୍ ବୟସ୍କ ଓ ଅବସ୍ଥା ବାଧ୍ୟ ହୋଇଥିବାରୁ ଏମାନେ କ୍ରୀତ ଦାସ ଭଳି ଖଟିଥାନ୍ତି । ଏମାନଙ୍କ ବାପାମାଆଙ୍କୁ ଆଗତୁରା ସାମାନ୍ୟ କିଛି ଅର୍ଥ ପ୍ରଦାନ କରି ଗୃହମାଲିକ ୩ ଗୁଣ କାମ ଆଦାୟ କରନ୍ତି । ଏ ଶିଶୁମାନେ ନିଜ ଉପାର୍ଜିତ ଧନ ନିଜେ ସୁଦ୍ଧା ଭୋଗ କରିପାରନ୍ତି ନାହିଁ । ମୁନୀବର ଅଇଁଠା କଣ୍ଟା ଖାଇ ତା' ପିଲାମାନଙ୍କର ଚିରାଫଟା ପୋଷାକରେ ଏମାନଙ୍କ ଶୈଶବ କଟିଯାଏ । ନିନ୍ଦା, ଅପମାନ, ମାଡ଼ଗାଳି ଏମାନଙ୍କର ନିତିଦିନିଆ ପ୍ରାପ୍ୟ ହୋଇ ରହିଯାଏ । ପିତାମାତା ଆଗତୁରା ଅର୍ଥ ଗ୍ରହଣ କରିଥିବାରୁ ଏମାନେ କାମ ଛାଡ଼ି ଯାଇପାରନ୍ତି ନାହିଁ କିମ୍ବା ଏଠି ମଧ୍ୟ ସ୍ୱସ୍ତିର ଜୀବନ ବିତାଇ ପାରନ୍ତି ନାହିଁ । ଅନେକ ନାବାଳିକା କିଶୋରୀ ଗୃହମାଲିକର ଲୋଲୁପ ଦୃଷ୍ଟିର ଶିକାର ହୋଇ ଭବିଷ୍ୟତ ନଷ୍ଟ କରିଦିଅନ୍ତି ।

ମଧ୍ୟବିତ୍ତ ଓ ନିମ୍ନ ମଧ୍ୟବିତ୍ତ ପରିବାରରେ ଶିଶୁ ନିର୍ଯ୍ୟାତନାର ଅନ୍ୟ ଏକ ରୂପ ପରିଲକ୍ଷିତ ହୁଏ। ଆର୍ଥିକ ଅସ୍ୱଚ୍ଛଳତା ହେତୁ ହେଉ କିମ୍ବା ସହରଠାରୁ ଦୂରରେ ଅବସ୍ଥାନ ହେତୁ ହେଉ ଅନେକ ପିତାମାତା ନିଜ ସନ୍ତାନକୁ ଭଲ ସ୍କୁଲରେ ପଢ଼ାଇବା ଆଶାରେ ସହରରେ ରହୁଥିବା ଆତ୍ମୀୟ ସ୍ୱଜନଙ୍କ ପାଖରେ ଛାଡ଼ିଥାଆନ୍ତି। ଏଠି ଯଦି ଆତ୍ମୀୟ ସ୍ୱଜନ ସହୃଦୟ ହୋଇଥାନ୍ତି ସେଭଳି ସମସ୍ୟା ସଙ୍କଟ ସୃଷ୍ଟି ହୁଏ ନାହିଁ ନଚେତ୍ ଶତକଡ଼ା ପଚାଶ ଭାଗ ଶିଶୁକୁ ଅବାଞ୍ଛିତ ବୋଲି ଗ୍ରହଣ କରାଯାଇଥାଏ। ପିତାମାତା ଯଦି ଆର୍ଥିକ ସହାୟତା କରୁଥାନ୍ତି କିଛି ପରିମାଣରେ ଏ ସମସ୍ୟା ସମାଧାନ ହୁଏ। ଅନ୍ୟଥା ଚତୁରତାର ସହ ଗୃହର ଚାକର ଭାବରେ ଏହାକୁ ବ୍ୟବହାର କରାଯାଇଥାଏ। ଘରର ଯାବତୀୟ ସୁଖ ସ୍ୱାଛନ୍ଦ୍ୟ ନିଜ ପିଲାକୁ ଦିଆ ହେଉଥିବା ବେଳେ ଏ ପିଲାଟିକୁ ସେଥିରୁ ବଞ୍ଚିତ କରାଯାଇଥାଏ। ଏକ ନ୍ୟୁନ ବୋଧତାରେ ପଡ଼ି ଶିଶୁଟି ସଂକୁଚିତ ଜୀବନ ବିତାଇଥାଏ। ଯାହା ପରବର୍ତ୍ତୀ ବ୍ୟକ୍ତିତ୍ୱକୁ ବହୁ ପରିମାଣରେ ପ୍ରଭାବିତ କରିଥାଏ। ଏଠି ଶିଶୁ ନିର୍ଯ୍ୟାତନା ପାଇଁ ଆଇନ୍‌ର ଆଶ୍ରୟ ନେଇ ହୁଏନାହିଁ। ପାରିବାରିକ ସମସ୍ୟା ବୋଲି କେବଳ ଘଟଣାଟିକୁ ଚପାଇ ଦିଆଯାଏ। ଏ କ୍ଷେତ୍ରରେ  ନାବାଳିକା କନ୍ୟାମାନେ କିଭଳି ଆତ୍ମୀୟ ସ୍ୱଜନଙ୍କ କାମ ଲାଳସାର ଶିକାର ହୁଅନ୍ତି, ତାହା ଧୀରେ ଗଣମାଧ୍ୟମକୁ ଆସିଲାଣି। ଏ ସମସ୍ୟାର ସମାଧାନ ଦିଗରେ ଏହା ନିଶ୍ଚୟ କିଛି ସହାୟକ ହେବ। ଏହାଛଡ଼ା ସାବତ ମାଆମାନଙ୍କ ଦ୍ୱାରା ଶିଶୁ ନିଯ୍ୟାତନା ଏକ ଚିରାଚରିତ ସମସ୍ୟା। ଏ ସମସ୍ୟାର ସମାଧାନ ଅତି ଦୁରୂହ ବ୍ୟାପାର। ପାଶ୍ଚାତ୍ୟ ରାଷ୍ଟ୍ରମାନଙ୍କର ଶିଶୁ ନିର୍ଯ୍ୟାତନା ରୋକିବା ପାଇଁ ସ୍ୱତନ୍ତ୍ର ଅନୁଷ୍ଠାନ ସବୁ ଗଢ଼ିଉଠିଛି। ଏପରିକି ପିତାମାତାମାନେ ଜନ୍ମିତ ସନ୍ତାନ ପ୍ରତି କିପରି ବ୍ୟବହାର କରୁଛନ୍ତି ତାର ଗୁପ୍ତ ରିପୋର୍ଟ ସଂଗ୍ରହ କରି କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯାଏ। ଆବାସିକ ବିଦ୍ୟାଳୟ ମାନଙ୍କରେ ଶିଶୁ ନିର୍ଯ୍ୟାତନା ଏକ ସାଧାରଣ ଘଟଣା, ବିଶେଷତଃ ଆଦିବାସୀ ଓ ହରିଜନ ଛାତ୍ର ଛାତ୍ରୀଙ୍କ ପାଇଁ ନିର୍ମିତ ଆଶ୍ରମ ବିଦ୍ୟାଳୟମାନଙ୍କରେ ଛାତ୍ରୀମାନେ ଯେଉଁ ନିର୍ଯ୍ୟାତନାର ଶିକାର ହେଛନ୍ତି ତାହା ସବୁ ଲୋକଲୋଚନକୁ ଆସୁନାହିଁ। ଆଶ୍ରମ ମେସ୍‌ର ଭାତ ଡାଲମା ଖାଇ ଦିନ କାଟୁଥିବା ଛାତ୍ରଛାତ୍ରୀମାନଙ୍କୁ କେତେକ ଶିକ୍ଷକ ଶିକ୍ଷୟିତ୍ରୀ ସାମାନ୍ୟ କିଛି ସୁସ୍ୱାଦୁ ଖାଦ୍ୟ ବିନିମୟରେ ଗୃହର ଯାବତୀୟ କାର୍ଯ୍ୟରେ ନିଯୁକ୍ତ କରିଥାନ୍ତି। ସାମାନ୍ୟ ତ୍ରୁଟି ପାଇଁ ଶ୍ରେଣୀ ଗୃହରେ ଶିଶୁମାନଙ୍କୁ ଅତିରିକ୍ତ ଶାରୀରିକ ଓ ମାନସିକ ଯନ୍ତ୍ରଣା ଦେବା ମଧ୍ୟ ଶିଶୁ ନିର୍ଯ୍ୟାତନାର ଅନ୍ୟତମ ରୂପ ରେଖା। ନିକଟ ଅତୀତରେ ଖୋଦ୍ ରାଜଧାନୀ ଭୁବନେଶ୍ୱରରେ ଏକ ସ୍କୁଲରେ ଅଷ୍ଟମ ଶ୍ରେଣୀରେ ପଢ଼ୁଥିବା କୋମଳମତି ଶିଶୁଟିଏ ଶ୍ରେଣୀ ଗୃହରେ ନିର୍ଯ୍ୟାତିତ

ହୋଇ ଆତ୍ମହତ୍ୟା କରିଥିବା ସମସ୍ତଙ୍କ ସ୍ମୃତି ପଟ୍ଟରେ ସଜୀବ ଥିବ। ଶିକ୍ଷକ ବେତ ପ୍ରହାରକୁ ଡରି ଅନେକ ଶିଶୁ ପାଠ ଛାଡ଼ିବା ଆମ ଦେଶର ଏକ ସାଧାରଣ ଘଟଣା।

ଶିଶୁମାନଙ୍କୁ ଅପହରଣ କରିନେଇ, ସେମାନଙ୍କୁ ଶାରୀରିକ ବିକଳାଙ୍ଗ କରି ଭିକ୍ଷା ବୃତ୍ତିରେ ନିୟୋଗ କରିବା ପୁରୁଣା କଥା। ସେମାନଙ୍କୁ ନେଇ ଚୋରି ଡକାୟତି, ପକେଟ ମାରିବା ପାଇଁ ତାଲିମ ଦେବା, ନିଶାଦ୍ରବ୍ୟ ଚୋରାକାରବାରରେ ନିଯୁକ୍ତି କରିବା ମଧ୍ୟ ସେମିତି ବହୁକାଳର କଥା। ଆଜିକାଲି ଶିଶୁମାନଙ୍କୁ ନେଇ ତାଙ୍କ ଶରୀରରୁ ମୂଲ୍ୟବାନ୍ ଅଙ୍ଗ ପ୍ରତ୍ୟଙ୍ଗ ବାହାର କରି ନେବାର ଖବର ମଧ୍ୟ ମିଳୁଛି। ଗଳ୍ପ ଉପନ୍ୟାସ ଓ ସିନେମା ଥିଏଟର୍‌ରେ ଏହା ବହୁଳ ପ୍ରଚାରିତ। ଏସବୁ ତ ଅସାମାଜିକ ଲୋକମାନଙ୍କ ଦ୍ୱାରା ହୁଏ। ଛାପାମରା ଦୁର୍ବୃତ୍ତ ଏ ପ୍ରକାର କାର୍ଯ୍ୟର ମୁଖ୍ୟ ନାୟକ। କିନ୍ତୁ ସମାଜରେ ଭଦ୍ର ଓ ସୁସ୍ଥ ମଣିଷ ବୋଲି ପରିଚୟ ଦେଉଥିବା ଆମେ କାହିଁକି ଶିଶୁଟିଏ ପ୍ରତି ସହାନୁଭୂତିଶୀଳ ହୋଇପାରୁ ନାହିଁ ? ଅବସ୍ଥା ବାଧ୍ୟ ଶିଶୁଟିଏକୁ ଦେଖିଲେ ଆମେ ତାକୁ ଶୋଷଣ କରିବାକୁ ଉଦ୍‌ଗ୍ରୀବ ହୋଇପଡ଼ୁ ? ଆମ ଭିତରର ଆସୁମାରି ପ୍ରବୃତ୍ତି ଶତଜିହ୍ୱ ହୋଇପଡ଼େ। ଅମୃତର ସନ୍ତାନ ଆମେ। କୀଟଠାରୁ ବ୍ରହ୍ମ ପର୍ଯ୍ୟନ୍ତ ସବୁଠାରେ ପରଂବ୍ରହ୍ମଙ୍କର ସତ୍ତା ଅନୁଭବିବା ପାଇଁ ଆମ ସଂସ୍କୃତି ଆମକୁ ଶିକ୍ଷା ଦିଏ। ସମଦର୍ଶୀ ହେବା ଆମର ଆଦର୍ଶ। ତଥାପି ବେଳେ ବେଳେ କାହିଁକି ଏମିତି ହୋଇଯାଏ?

ଲାଲମହଲର ପ୍ରଶାନ୍ତ ନାହାକ ହେଉ କି ମଞ୍ଜୁସେଠୀ ହେଉ, ଆମ କ୍ରୁର ମନୋବୃତ୍ତିର ଶିକାର ହୁଅନ୍ତି। ଅନ୍ୟକୁ ଯନ୍ତ୍ରଣା ଦେଇ ପାଶବିକ ଆନନ୍ଦ ଅନୁଭବ କରିବାରେ କି ପୌରୁଷାର୍ଥ ନିହିତ ? ଆମର ଏ ତୁଚ୍ଛା ଅହମିକା ଓ ଭ୍ରାନ୍ତି ବିଳାସର କ'ଣ ଶେଷ ନାହିଁ ? ଯାହା ହାତରେ ଖେଳନାଟିଏ ଧରେଇ ଦେବାକୁ ଆମର ଯୋଗ୍ୟତା ନାହିଁ, ତା ହାତରେ ଅଗ୍ନି ପିଣ୍ଡଟିଏ ଧରାଇଦେବାର ଅଧିକାର ଆମକୁ ଦେଲା କିଏ ? ଘଟଣାଟି ଯେତେବେଳେ ଲୋକ ଲୋଚନକୁ ଆସିଲାଣି ଦୋଷୀ ତ ନିଶ୍ଚୟ ଦଣ୍ଡିତ ହେବ, କିନ୍ତୁ ଲୋକ ଲୋଚନ ଅଗୋଚରରେ ଆମ ଅବଚେତନ ମନରେ ସ୍ୱାର୍ଥସିଦ୍ଧି ପାଇଁ ବ୍ରହ୍ମରୂପୀ ବାଳୁତଙ୍କ ପ୍ରତି ଯେଉଁ ସ୍ୱାର୍ଥ କୈନ୍ଦ୍ରିକ ଚିନ୍ତାଧାରା ରହିଛି, ତାହା ସଂପୂର୍ଣ୍ଣ ବିଲୁପ୍ତ ନ ହେଲେ ଏ ଘଟଣାର ଏମିତି ପୁନରାବୃତ୍ତି ଚାଲିଥିବ। କୌଣସି ଟାସ୍କଫୋର୍ସ କିମ୍ବା ଆଇନ କାନୁନ୍‌ର କଠୋର ଦଣ୍ଡ ଏ ସମସ୍ୟାର ସମାଧାନ କରିପାରିବ ନାହିଁ।

ଅନୁପମ ଭାରତ

୨୪ ଜୁଲାଇ, ୨୦୦୪

# ଆଦିବାସୀ ପ୍ରଥା ବନାମ ପ୍ରଚାରଧର୍ମୀ ସାମ୍ବାଦିକତା

କୌଣସି ଗୋଟିଏ ଜାତି, ଗୋଷ୍ଠୀ କିମ୍ବା ସମ୍ପ୍ରଦାୟର ନୃତାତ୍ତ୍ୱିକ ମୂଲ୍ୟବୋଧ ଅନୁଧ୍ୟାନ ନକରି ତାଙ୍କ ସମାଜରେ ଘଟୁଥିବା ନିତ୍ୟନୈମିତିକ ଘଟଣାକୁ ବିକୃତ ରୂପେ ପ୍ରଚାର କରିବା ସୁସ୍ଥ ସାମ୍ବାଦିକତାର ଲକ୍ଷଣ ନୁହେଁ। ସାମ୍ବାଦିକମାନଙ୍କର ଦାୟିତ୍ୱହୀନ ଖବର ଅନେକ ସମୟରେ ଜନମାନସକୁ ବିଭ୍ରାନ୍ତ କରେ। ଏମିତି ଏକ ଖବର ଚାଞ୍ଚଲ୍ୟ ସୃଷ୍ଟି କରିଛି କଳାହାଣ୍ଡି ଜିଲ୍ଲାର ଖଡ଼ିଆଳ ଥାନା ଅନ୍ତର୍ଗତ ଅମଲାପାଲି ଗାଁରେ ବନିତା ପୋଡ଼କୁ ନେଇ। ଓଡ଼ିଶାର ପ୍ରାୟ ପ୍ରତ୍ୟେକ ଆଦିବାସୀ ସମ୍ପ୍ରଦାୟରେ ବିବାହ ପ୍ରଥା ବଡ଼ ବିଚିତ୍ର। ସଭ୍ୟ ସମାଜରେ ନାରୀମାନଙ୍କର ଆତ୍ମମର୍ଯ୍ୟାଦା ଅପେକ୍ଷା ଆଦିବାସୀ ସମ୍ପ୍ରଦାୟରେ ନାରୀମାନଙ୍କର ଆତ୍ମମର୍ଯ୍ୟାଦା ଖୁବ୍ ବେଶୀ। ଆଦିବାସୀମାନଙ୍କର ଅର୍ଥନୈତିକ ପରିସରକୁ ନାରୀମାନେ ହିଁ ନିୟନ୍ତ୍ରଣ କରୁଥିବାରୁ ତାଙ୍କ ସମାଜରେ ସେମାନଙ୍କର ଯଥେଷ୍ଟ ସ୍ୱତନ୍ତ୍ରତା ରହିଛି। ସ୍ୱଇଚ୍ଛାରେ ସ୍ୱାମୀ ନିର୍ବାଚନ ଅଧିକାର କାହିଁ କେଉଁ କାଳରୁ ସେମାନେ ନିରବଚ୍ଛିନ୍ନ ଭାବରେ ଉପଭୋଗ କରିଆସୁଛନ୍ତି। ସଭ୍ୟ ସମାଜ ଭଳି ତାଙ୍କ ସମ୍ପ୍ରଦାୟରେ କନ୍ୟାପିତା ଜାନି ଯଉତୁକ ସହ ବରପକ୍ଷ ନିକଟରେ ନିଉଛାଳି ହୁଅନ୍ତି ନାହିଁ। କନ୍ୟାପିତା କନ୍ୟାଟିଏ ବିବାହ ଦେଇସାରି ସର୍ବସ୍ୱାନ୍ତ ହୁଅନ୍ତି ନାହିଁ। ବରଂ ନାରୀର ଆତ୍ମସମ୍ମାନ ଦୃଷ୍ଟିରୁ ବରପକ୍ଷ କନ୍ୟାପକ୍ଷକୁ ଭୋଜି ଭାତ, ମଦ, କୁକୁଡ଼ା, ଝୋଲାଟଙ୍କା ଆଦି ଦେଇ ଆପ୍ୟାୟିତ କରନ୍ତି। ଯେଉଁ ବରପକ୍ଷ ଏହିସବୁ ଲୌକିକତା ପୂରଣ କରିବା ପାଇଁ ଅସମର୍ଥ ସେଠି ବର ନିଜେ ଝିଅ ଘରେ ରହି ଶ୍ରମଦାନପୂର୍ବକ (ଗୋତି ରୂପେ) ଆବଶ୍ୟକୀୟ ପାଉଣା ପରିଶୋଧ କରି ଝିଅକୁ ବିବାହ କରିବାର ପ୍ରଥା ମଧ୍ୟ ରହିଛି। ତେଣୁ କନ୍ୟାଟି ଆଣିବା ପାଇଁ ହେଲେ ବରପକ୍ଷ କନ୍ୟା ପକ୍ଷକୁ କିଛି ଟଙ୍କା ଦେବା ସେମାନଙ୍କର ପ୍ରଥାସିଦ୍ଧ। ସିଧାସଳଖ କହିବାକୁ ଗଲେ ଆମ ସମାଜରେ ଯୌତୁକ ପ୍ରଥା ମାଧ୍ୟମରେ ଆମେ ଜ୍ୱାଇଁ କିଣୁ ଏବଂ ଝୋଲା ଟଙ୍କା ମାଧ୍ୟମରେ ସେମାନେ ବୋହୂ କିଣନ୍ତି। ସେହି ପରିପ୍ରେକ୍ଷୀରେ ବିଦ୍ୟାଧର ପୋଡ଼ ୪୦ ଟଙ୍କା ଝୋଲାଟଙ୍କା ଦେଇ ବନିତାକୁ କିଣିଥିଲା ବୋଲି ନକହି ବରଂ ବିବାହ କରିଥିଲା

କହିଲେ ଉପଯୁକ୍ତ ହେବ। ବିଦ୍ୟାଧର ପୋଢ଼ ଅନ୍ଧ ଓ ଦରିଦ୍ର ଥିବା ହେତୁ ପ୍ରଥା ଅନୁଯାୟୀ ଗାଁରେ ଭୋଜିଭାତ ଦେଇ ନପାରିବାରୁ ତା'ର ବିବାହ ସ୍ୱୀକୃତି ପାଇନଥିଲା। କେବଳ କଳାହାଣ୍ଡି ଜିଲ୍ଲା ନୁହେଁ - କୋରାପୁଟ ଜିଲ୍ଲାର ଆଦିବାସୀ ସମ୍ପ୍ରଦାୟରେ ଚାରିପାଞ୍ଚ ପିଲାର ବାପା ମାଆ ବିବାହ କରିବା ଏକ ସାଧାରଣ ଘଟଣା। ଆଦିବାସୀ ପୁରୁଷ, ନାରୀମାନଙ୍କୁ ନେଇ ପ୍ରଥମେ ଘର ସଂସାର କରିସାରି ପରେ ଆର୍ଥିକ ସୁବିଧା ଦେଖି ବିବାହ କରିବା ପାଇଁ ସେମାନଙ୍କ ସାମାଜିକ ବିଧି ବ୍ୟବସ୍ଥା ବାଧା ଦିଏ ନାହିଁ। ଅଥଚ ଦୀର୍ଘ ୧୫ ବର୍ଷ ତଳେ ବନିତା ଜୀବନରେ ଠିକ୍ ଏମିତି ଘଟଣାଟିଏ ଘଟିଥିବାରୁ ତାକୁ ଯେ କାହିଁକି ଏତେ ରଙ୍ଗ ଦିଆଯାଉଛି ତାହା ସ୍ପଷ୍ଟ ହେଉନାହିଁ।

କେବଳ ଆଦିବାସୀ ସମ୍ପ୍ରଦାୟ ନୁହେଁ ସ୍ଥଳବିଶେଷରେ ଆମ ସମାଜରେ ମଧ୍ୟ କୌଣସି କାରଣରୁ ଅଯୋଗ୍ୟ ବିବେଚିତ ହେଉଥିବା ବର କନ୍ୟା ସୁନା ଦେଇ ଗରିବ ଘରୁ ସୁନ୍ଦରୀ ଗୁଣବତୀ କନ୍ୟାର ପାଣିଗ୍ରହଣ କରିବା ଘଟଣା ବିରଳ ନୁହେଁ। ଫକୀରମୋହନ ସେନାପତିଙ୍କର କନ୍ୟା ସୁନା ଗଳ୍ପ ଏଇଭଳି ଏକ ପୃଷ୍ଠପୀଠିକାରେ ରଚିତ ହୋଇଥିଲା। ଏହାଛଡ଼ା ବରପକ୍ଷ କନ୍ୟା ପକ୍ଷର ସମସ୍ତ ବିବାହ ଖର୍ଚ୍ଚ ତୁଲେଇ ତୋଳା କନ୍ୟା କରି ଝିଅକୁ ନେଇ ବିବାହ କରିବାର ପ୍ରଥା ସୁଦ୍ଧା ଆମ ସମାଜରେ ଅଛି। ଏଭଳି ଘଟଣାକୁ ଆମର ସାମ୍ବାଦିକମାନଙ୍କର ସକ୍ରିୟ ଲେଖନୀ ବର୍ଣ୍ଣନା କରିବାରେ ତତ୍ପର ହେବା କେହି ଦେଖିନାହାଁନ୍ତି। କଳାହାଣ୍ଡିରେ ପିଲା ବିକ୍ରି ଘଟଣା ମିଥ୍ୟା ନୁହେଁ। କିନ୍ତୁ ତା' ଅର୍ଥ ନୁହେଁ ଯେ ଯାହା ସେମାନଙ୍କର ପ୍ରଥାସିଦ୍ଧ, ତାକୁ ପିଲା ବିକ୍ରି ନାଁରେ ଅପପ୍ରଚାର କରି ଆମେ ଆମର ଫାଇଦା ଉଠାଇବା ?

ସାମ୍ବାଦିକମାନଙ୍କୁ ସଂଯମ ଶିକ୍ଷା ଦେବାପାଇଁ ସାମ୍ବାଦିକତା ପାଠ୍ୟକ୍ରମରେ ସୁନ୍ଦର ଉକ୍ତିଟିଏ ଅଛି-କୁକୁର ମଣିଷକୁ କାମୁଡ଼ିଲେ ତାହା ସମ୍ବାଦ ନୁହେଁ କିନ୍ତୁ ମଣିଷ କୁକୁରକୁ କାମୁଡ଼ିଲେ ତାହା ସମ୍ବାଦ-ଏକଥା କ'ଣ ତଥାପି ଆମ ସାମ୍ବାଦିକମାନଙ୍କୁ ବୁଝେଇବାକୁ ପଡ଼ିବ ?

ଅନୁପମ ଭାରତ

୧୧ ନଭେମ୍ବର, ୨୦୦୦

# ସାର୍ଥକ ନାରୀତ୍ୱ - ଏକଅନୁଚିନ୍ତା

ନାରୀ ଓ ପୁରୁଷ, ସୃଷ୍ଟିର ଦୁଇଟି ଅଭିନ୍ନ ଅଙ୍ଗ। ଗୋଟିକର ଅବର୍ତ୍ତମାନରେ ଅନ୍ୟଟିର ସ୍ଥିତି ଅସମ୍ପୂର୍ଣ୍ଣ। ଅନ୍ୟଅର୍ଥରେ କହିଲେ ଏକ ଅପରର କ୍ରିୟାଶୀଳତାର ହେତୁ। ନାରୀର ବିକଶିତ ବ୍ୟକ୍ତିତ୍ୱ ସମ୍ପର୍କରେ କୁହାଯାଇପାରେ, ନାରୀ ବ୍ୟକ୍ତିତ୍ୱର ଦୁଇଟି ଦିଗ ପୁରୁଷକୁ କର୍ମଚଞ୍ଚଳ କରେ। ଗୋଟିଏ ହେଲା ପତ୍ନୀ ବା ପ୍ରିୟତମା ରୂପ, ଅନ୍ୟଟି ହେଲା ମାତୃ ରୂପ। ଆମ ଭାରତୀୟ ଦର୍ଶନରେ ନାରୀର ମାତୃରୂପକୁ ପ୍ରାଧାନ୍ୟ ଦିଆଯାଇଛି। ଏ ସମ୍ପର୍କରେ ମନିଷୀ ବିବେକାନନ୍ଦ କହନ୍ତି, ନାରୀର ମାତୃରୂପ ହିଁ ପ୍ରଥମ ଓ ଶେଷ କଥା।

ନାରୀର ଏହି ଦ୍ୱୈତ ସତ୍ତାକୁ ପ୍ରାଞ୍ଜଳ ଭାବରେ ଉପଲବ୍ଧି କରିବା ପାଇଁ ଆମେ ପୁରାଣ ଇତିହାସରୁ କେତୋଟି ଉଦାହରଣ ନେଇପାରିବା। ଭାରତୀୟ ଚିନ୍ତନରେ ସର୍ବଶ୍ରେଷ୍ଠ ଦୁଇଟି ମହାକାବ୍ୟ ରାମାୟଣ ଓ ମହାଭାରତ। ଦୁଇଟି ମହିୟସୀ ନାରୀଙ୍କର ଭିନ୍ନମୁଖୀ ବ୍ୟକ୍ତିତ୍ୱରେ ଏ ଦୁଇଟି ମହାକାବ୍ୟ ଯଶସ୍ୱୀମଣ୍ଡିତ ହୋଇଛି। ମହାଭାରତର ମହାନାୟିକା ଦ୍ରୌପଦୀଙ୍କର ବ୍ୟକ୍ତିତ୍ୱ ପ୍ରେମାସ୍ପଦା ପ୍ରିୟତମା ପତ୍ନୀ ରୂପରେ ବହୁ ପରିମାଣରେ ପ୍ରତିଭାତ ହୋଇଛି। ପଞ୍ଚ ପାଣ୍ଡବଙ୍କର ପତ୍ନୀ ରୂପରେ ସେ ପାଣ୍ଡବ ପାଞ୍ଚ ଭାଇଙ୍କୁ କର୍ମଚଞ୍ଚଳ କରିଛନ୍ତି। ତାଙ୍କରି ପ୍ରେରଣାରେ ମହାଭାରତ ଯୁଦ୍ଧ ସଂଘଟିତ ହୋଇଛି। ଅନ୍ୟାୟ, ଅସତ୍ୟ, ଅଧର୍ମ ବିରୋଧରେ ସଂଗ୍ରାମ କରିବା ପାଇଁ ପଞ୍ଚ ପାଣ୍ଡବଙ୍କୁ ସେ ସଚେତନ କରେଇଛନ୍ତି। ଅପରପକ୍ଷରେ ଇଶାରା ମାତ୍ରକେ ସୃଷ୍ଟିର ସକଳ ଐଶ୍ୱର୍ଯ୍ୟ ପଞ୍ଚ ପାଣ୍ଡବ ଦ୍ରୌପଦୀଙ୍କ ପାଦତଳେ ଅର୍ପଣ କରିଛନ୍ତି। ଜୀବିତାବସ୍ଥାରେ ଦ୍ରୌପଦୀଙ୍କର ଅଭିପ୍ସା ଅପୂର୍ଣ୍ଣ ରହିନାହିଁ; କିନ୍ତୁ ସେହି ପ୍ରୀତିପ୍ରଦା ପାଣ୍ଡବ ପତ୍ନୀ ଦ୍ରୌପଦୀଙ୍କ ଅନ୍ତିମ ସମୟ ଅତ୍ୟନ୍ତ ଦୁଃଖଦ ଓ ଦୟନୀୟ ହୋଇପଡ଼ିଛି। ଇହଧାମ ପରିତ୍ୟାଗ କରିବା ପୂର୍ବରୁ ଅପରିଣାମଦର୍ଶୀ ଅଶ୍ୱତ୍‌ଥମା ତାଙ୍କର ପଞ୍ଚପୁତ୍ରଙ୍କ ମସ୍ତକ ଛେଦନ କରି ତାଙ୍କ ମାତୃତ୍ୱକୁ ଲାଞ୍ଛିତ କରିଛି। ଜୀବନ କାଳ ମଧ୍ୟରେ ସକଳ ପ୍ରାଚୁର୍ଯ୍ୟ ଓ ଐଶ୍ୱର୍ଯ୍ୟକୁ ଅନାୟାସରେ ଉପଲବ୍ଧି କରିଥିବା ଦ୍ରୌପଦୀଙ୍କ ଅସହାୟ ମୃତ୍ୟୁରେ ସମବେଦନା ସୁଦ୍ଧା ନ ଜଣାଇବା

ପାଇଁ ଯୁଧିଷ୍ଠିର ଉପଦେଶ ଦେଇଛନ୍ତି । ଅପର ପକ୍ଷରେ ରାମାୟଣର ନାୟିକା ସୀତାଙ୍କର ବ୍ୟକ୍ତିତ୍ୱ ଆଦର୍ଶ ମାତୃତ୍ୱର ଏକ ଚରମ ନିଦର୍ଶନ । ସାରା ଜୀବନ ସେବା, ତ୍ୟାଗ ଓ ତିତୀକ୍ଷାରେ ଅତିବାହିତ କରି ପ୍ରତିଦାନରେ ନିନ୍ଦା ଅପବାଦ ଓ ନିର୍ଯ୍ୟାତନାର ସେ ଶିକାର ହୋଇଛନ୍ତି । ହୋମ ଶିଖା ଭଳି ପବିତ୍ର ଅନ୍ତସତ୍ତ୍ୱା ସୀତା ଅନୁଚିତ ଆଧାରରେ ଅଯୋଧ୍ୟା ରାଜପ୍ରାସାଦର ଐଶ୍ୱର୍ଯ୍ୟ ତ୍ୟାଗ କରି ଋଷିଙ୍କ ଆଶ୍ରମରେ ନିର୍ବାସିତାର ଜୀବନ ଯାପନ କରିଛନ୍ତି; ଦୁଃଖ ଯନ୍ତ୍ରଣାର ଯୁପକାଠ ଭିତରେ ତାଙ୍କର ସନ୍ତାନ ବାତ୍ସଲ୍ୟ ଓ ଆଦର୍ଶ ମାତୃତ୍ୱ ତାଙ୍କୁ ମହନୀୟ ଐଶ୍ୱର୍ଯ୍ୟରେ ଶ୍ରୀମଣ୍ଡିତ କରିଛି । ଆତ୍ମମର୍ଯ୍ୟାଦା ଓ ସ୍ୱାଭିମାନର ସୁରକ୍ଷା କରିବାକୁ ଯାଇ ସେ ସ୍ୱଇଛାରେ ଇହଲୀଳା ସମ୍ବରଣ କରିଛନ୍ତ; କିନ୍ତୁ ତାଙ୍କ ମାତୃତ୍ୱର ସୁବର୍ଣ୍ଣ ସ୍ୱାକ୍ଷର ବହନ କରିଥିବା ଲବକୁଶ ତାଙ୍କୁ ଅମର କରି ରଖିଛନ୍ତି । ସୀତାଙ୍କର ଅନ୍ତିମ କାଳ ଦ୍ରୌପଦୀଙ୍କ ଭଳି ଶୂନ୍ୟତା ବ୍ୟର୍ଥତା ଓ ହା'ହୁତାଶମୟ ନଥିଲା; ଯଦିଓ ତାଙ୍କ ଜୀବନକାଳ ଦ୍ରୌପଦୀଙ୍କ ଭଳି ଐଶ୍ୱର୍ଯ୍ୟ ଓ ପ୍ରାଚୁର୍ଯ୍ୟମୟ ନଥିଲା । ଦ୍ରୌପଦୀ ଓ ସୀତା ଉଭୟ ଆମ ଭାରତୀୟ ନାରୀ ସମାଜକୁ ପ୍ରତିନିଧିତ୍ୱ କରୁଥିଲେ ସୁଦ୍ଧା ସୀତାଙ୍କ ଭଳି ନାରୀ ଚରିତ୍ରକୁ ସମସ୍ତେ ପତ୍ନୀ ରୂପରେ, ମାଆ ରୂପରେ କିମ୍ବା କନ୍ୟା ରୂପରେ ପାଇବାପାଇଁ କାମନା କରନ୍ତି ।

ପରିବାରକୁ ଶୃଙ୍ଖଳିତ ଓ ସଂସ୍କୃତ କରିବା ପାଇଁ ପୁରୁଷ ଅପେକ୍ଷା ନାରୀର ଭୂମିକା ଗୁରୁତ୍ୱପୂର୍ଣ୍ଣ । ପ୍ରାକୃତିକ ନିୟମ ଅନୁଯାୟୀ ସନ୍ତାନ ଭୂମିଷ୍ଠ ହେବା ପୂର୍ବରୁ ସେ ଆତ୍ମନିର୍ଭରଶୀଳ ହେବା ପର୍ଯ୍ୟନ୍ତ ପ୍ରକୃତି ଅନେକ ଗୁରୁଦାୟିତ୍ୱ ନାରୀକୁ ଅର୍ପଣ କରିଛି । ବିଧିବିଚାରରେ ନାରୀପୁରୁଷ ଅପେକ୍ଷା ଅଧିକ ଦାୟିତ୍ୱଶୀଳ । ଧୈର୍ଯ୍ୟ, ସହିଷ୍ଣୁତା, ବିଚାରଶକ୍ତି ଏବଂ ଏକ ସମୟରେ ଏକାଧିକ କାର୍ଯ୍ୟ କରିବାର ଦକ୍ଷତା ଆଦି କେତେକ ଗୁଣାବଳୀରେ ନାରୀ, ପୁରୁଷ ଅପେକ୍ଷା କାହିଁ କେତେ ଉଚ୍ଚରେ । ତାର ନାରୀସୁଲଭ ଗୁଣାବଳୀର ସଦୁପଯୋଗ ହେଲେ ପୃଥିବୀ ସ୍ୱର୍ଗରାଜ୍ୟରେ ପରିଣତ ହୋଇପାରିବ । କିନ୍ତୁ ଗଭୀର ପରିତାପର ବିଷୟ; ପ୍ରକୃତିଦତ୍ତ କେତେକ ଗୁଣାବଳୀକୁ ବର୍ଜନ କରି ସାମ୍ପ୍ରତିକ ନାରୀ ତା'ର ସକଳ ଦକ୍ଷତା କେବଳ ପୁରୁଷ ସହ ସମକକ୍ଷ ହେବାରେ ନିୟୋଗ କରୁଛି । ସେ ସମକକ୍ଷ ପୁଣି କେବଳ ପ୍ରତିଯୋଗିତା ଭିତ୍ତିରେ । ଅବଶ୍ୟ ଆମର ସାମାଜିକ ଓ ପାରିପାର୍ଶ୍ୱିକ ପରିସ୍ଥିତି ତାକୁ ଏଭଳି ନିଷ୍ପତ୍ତି ନେବାପାଇଁ ବାଧ୍ୟକରିଛି । ସମ୍ପ୍ରତି ନାରୀମାନଙ୍କ ପ୍ରତି ସମାଜର ଦୃଷ୍ଟିକୋଣରେ ପରିବର୍ତ୍ତନ ଘଟିଛି । ସଗର ରାଜା ଏକଶହ କନ୍ୟାସନ୍ତାନ ପାଇଁ ତପସ୍ୟା କରୁଥିବା ସମୟରେ ତାଙ୍କ ଐଶ୍ୱର୍ଯ୍ୟରେ ଈର୍ଷାପରାୟଣା ହୋଇ ଇନ୍ଦ୍ର ସରସ୍ୱତୀଙ୍କୁ ଆବାହନ କରିଛନ୍ତି ।

ସରସ୍ୱତୀ ସଗର ରାଜାଙ୍କ କଣ୍ଠରେ ବସି ପୁତ୍ରୀ ବଦଳରେ ପୁତ୍ର ବୋଲି ଉଚ୍ଚାରଣ କରେଇ ନେଇଛନ୍ତି । ଆଜି କିନ୍ତୁ ଆମ ସମାଜରେ ମାଆର ଜରାୟୁ ମଧ୍ୟ କନ୍ୟାସନ୍ତାନ ପାଇଁ ସୁରକ୍ଷିତ ନୁହେଁ। ମାତୃଗର୍ଭରେ ସଞ୍ଚରିତ ହେବା ମୁହୂର୍ତ୍ତରୁ ହିଁ ସେ ସଂଘର୍ଷଶୀଳା, କନ୍ୟା ସନ୍ତାନଟି ଯେତେବେଳେ ପୃଥିବୀର ଆଲୋକ ଦେଖେ, କେଉଁଠି ଦୟା, ଦାକ୍ଷିଣ୍ୟ ଓ ଅନୁକମ୍ପାରେ ବଞ୍ଚେ ତ କେଉଁଠି ବଞ୍ଚିବାପାଇଁ ତାକୁ ତୀବ୍ର ସଂଗ୍ରାମ କରିବାପାଇଁ ପଡ଼େ, ପୁଣି କେଉଁଠି ନିର୍ଯ୍ୟାତିତା, ଅସହାୟା ଓ ନିକ୍ଷେପିତା ହୋଇ ବଞ୍ଚେ। ସେଇଥିପାଇଁ ସେ ନିଜର ସତ୍ତା ସାବ୍ୟସ୍ତ କରିବାପାଇଁ ପୁରୁଷ ସହ ତୀବ୍ର ପ୍ରତିଯୋଗିତା କରେ। ସମାଜର ଦୃଷ୍ଟି ଆକର୍ଷଣ କରିବାପାଇଁ ଅନେକ ଅବୈଧ ମାର୍ଗର ଆଶ୍ରୟ ନେବାପାଇଁ ସୁଦ୍ଧା ସେ କୁଣ୍ଠାବୋଧ କରେ ନାହିଁ। ଫଳରେ ପରିବାର ସ୍ୱାମୀ ସନ୍ତାନ ଓ ଆତ୍ମୀୟ ସ୍ୱଜନଙ୍କ ପ୍ରତି ତାର ସ୍ୱାଭାବିକ କର୍ତ୍ତବ୍ୟରେ ଅବହେଳା ଘଟେ। କେଉଁଠି ସେ ସମ୍ପୂର୍ଣ୍ଣ ସ୍ୱାର୍ଥପର ହୋଇଉଠେ ତ କେଉଁଠି ସ୍ୱତନ୍ତ୍ରା ହୋଇ ଉଠେ। ନାରୀକୁ ଯଦି ସମାଜ ତା'ର ନ୍ୟାଯ୍ୟ ସମ୍ମାନ ଓ ମର୍ଯ୍ୟାଦା ପ୍ରଦାନ କରନ୍ତା; ତା'ର ଅବଚେତନ ମନଭିତରେ ପୁରୁଷ ସହ ପ୍ରତିଯୋଗିତା କରିବାର ଯେଉଁ ମନୋବୃତ୍ତି ରହିଛି ତା'ର ଉଦ୍ରେକ ହୁଅନ୍ତା ନାହିଁ। ଆମ ପିତୃକୈନ୍ଦ୍ରିକ ସମାଜରେ ଯୌତୁକ ପ୍ରଥା, ବରପକ୍ଷ ନିକଟରେ କନ୍ୟା ପକ୍ଷକୁ ନୀଚ ଦେଖିବାର ପରମ୍ପରା, କେତେକ ବୈଦିକ ବିଧିବିଧାନରେ ନାରୀକୁ ଅଧିକାର ନଦେବା, ପିତୃପୁରୁଷଙ୍କ ଶ୍ରାଦ୍ଧାଦିକର୍ମ, ମୁଖାଗ୍ନି ଦେବା ଆଦି କେତେକ କାର୍ଯ୍ୟ କନ୍ୟାପାଇଁ ନିଷିଦ୍ଧଥିବାରୁ ପୁତ୍ର ସନ୍ତାନର ଅଭାବରେ ପରିବାରକୁ ଅପୂର୍ଣ୍ଣ ମନେ କରାଯାଏ। ସର୍ବଗୁଣସମ୍ପନ୍ନା କନ୍ୟା ଅପେକ୍ଷା କୁଳାଙ୍ଗାର ପୁତ୍ର ଅଧିକ ଭରସାଯୋଗ୍ୟ ମନେ କରାଯାଏ। କାରଣ ପରିବାରର ବଂଶରକ୍ଷା କେବଳ ପୁତ୍ର ଦ୍ୱାରା ସମ୍ଭବ ହୋଇପାରିବ ବୋଲି ଆମ ସମାଜରେ ବିଶ୍ୱାସ। ଏ ପ୍ରକାର ଅନ୍ଧବିଶ୍ୱାସ ପ୍ରଥମେ ଉଚ୍ଛେଦ କରିବା ସମସ୍ତଙ୍କର ନୈତିକ କର୍ତ୍ତବ୍ୟ।

ନାରୀର ଯେଉଁ କ୍ଷେତ୍ରରେ ଦକ୍ଷତା ରହିଛି, ସେହି କ୍ଷେତ୍ରପାଇଁ ତାକୁ ପ୍ରସ୍ତୁତ କରାଯାଉ। ରାଜନୀତି କ୍ଷେତ୍ରରେ ୩୦ ପ୍ରତିଶତ ସ୍ଥାନ ସଂରକ୍ଷଣ ପାଇଁ ପରିବାର ସଜାଡ଼ିବା, ଘରକରଣାରେ ରୁଚି ରଖିଥିବା ସୁଗୃହିଣୀଟିକୁ ନେଇ ଜବରଦସ୍ତ ରାଜନୀତିର ପ୍ଲାଟଫର୍ମରେ ଛିଡ଼ା କରେଇଲେ ରାଜନୀତିରେ ସେ ଅନ୍ୟମାନଙ୍କର କାଠକଣ୍ଢେଇ ହେବ, ଅପରପକ୍ଷେ ନିଜ ପରିବାରର ଶାନ୍ତିଶୃଙ୍ଖଳା ଧ୍ୱସ୍ତବିଧ୍ୱସ୍ତ ହେବ। ଠିକ୍ ସେହିପରି ରାଜନୀତି ବିଜ୍ଞାନ, କଳା, ବ୍ୟବସାୟ ଆଦିରେ ରୁଚି ରଖିଥିବା ନାରୀଟିର ସକଳ ଦକ୍ଷତାକୁ ଅସ୍ୱୀକାର କରି ତାକୁ ଗୃହକୋଣରେ ଆବଦ୍ଧ କଲେ

ତା'ର ସମ୍ଭାବ୍ୟ ବ୍ୟକ୍ତିତ୍ୱର ବ୍ୟର୍ଥତା, ଅବଦମିତ ଉଚ୍ଚାଭିଳାଷ, ପରିବାରର ଶାନ୍ତିଶୃଙ୍ଖଳା ନଷ୍ଟକରିବ।

ନାରୀଟିଏ ରାଜନୀତିରେ ଶୀର୍ଷସ୍ଥାନ ମଣ୍ଡନ କରୁ, ମହାକାଶଚାରୀ ହେଉ, କମ୍ପ୍ୟୁଟର ଇଞ୍ଜିନିୟର ହେଉ ଅର୍ଥ ଉପାର୍ଜନ ପାଇଁ ଯେକୌଣସି ଚାକିରି କ୍ଷେତ୍ରରେ ଉପନୀତ ହେଉ ନା କାହିଁକି ପରିବାର ପ୍ରତି ତା'ର କର୍ତ୍ତବ୍ୟ ଉପରେ ପ୍ରଥମ ପ୍ରାଧାନ୍ୟ ଦେବା ଉଚିତ। ପ୍ରକୃତି ନାରୀକୁ ମାତୃତ୍ୱ ପ୍ରଦାନ କରି ଯେପରି ମହିମାଣ୍ଡିତ କରିଛି, ତା'ର ମର୍ଯ୍ୟାଦା ରକ୍ଷାକରିବା ନାରୀର ପ୍ରାଥମିକ କର୍ତ୍ତବ୍ୟ। ସମାଜକୁ ସନ୍ତାନ ରୂପରେ କେତୋଟି ବିଫଳ ବ୍ୟକ୍ତିତ୍ୱ ପ୍ରଦାନ କରି ନିଜେ ସାର୍ଥକତାର ଶୀର୍ଷ ଚୁମ୍ବନ କରିବାରେ ନାରୀର ଗୌରବ ନାହିଁ, ସମାଜକୁ ଉତ୍ତମ ନାଗରିକ ଓ ସଫଳ ବ୍ୟକ୍ତିତ୍ୱ ପ୍ରଦାନରେ ଯେଉଁ ସାର୍ଥକତା ରହିଛି ତାର ପଟାନ୍ତର ନାହିଁ।

ପରିଶେଷରେ ଏତିକି କୁହାଯାଇପାରେ, ନାରୀ ଶକ୍ତିମୟୀ, ପୁରୁଷର ଶକ୍ତି ଯେଉଁଠି ହାରମାନେ, ନାରୀ ଶକ୍ତି ସେ ସଙ୍କଟର ସହଜ ସମାଧାନ କରିଥାଏ। ନାରୀଟିଏ ଯଦି ମାତୃସୁଲଭ ଗୁଣାବଳୀକୁ ବିସ୍ମୃତ ହୋଇ କେବଳ ପୁରୁଷ ସହ ସମକକ୍ଷ ହେବାପାଇଁ ତାର ସକଳ ଶକ୍ତି ପ୍ରଦର୍ଶନ କରିଚାଲେ, ତା'ହେଲେ ସମାଜ ଗଠନର ମୂଳପିଣ୍ଡ ପରିବାର ବିଶୃଙ୍ଖଳିତ ହୋଇପଡ଼ିବ। ଅବହେଳିତ ସନ୍ତାନମାନେ ପରବର୍ତ୍ତୀ କାଳରେ ସମାଜର ଗଳଗ୍ରହ ହୋଇପଡ଼ିବେ। ସମାଜରେ ଅବ୍ୟବସ୍ଥା ଦେଖାଦେବ। ନାରୀ ତେଣୁ ସଦାସର୍ବଦା ନିଜକୁ ରଣାଙ୍ଗନରେ ଉପସ୍ଥାପନ ନ କରି ରଣାଙ୍ଗନ ପାଇଁ ନିଜକୁ ପ୍ରସ୍ତୁତ କରି ରଖୁ। ନିହାତି ଆବଶ୍ୟକ ପଡ଼ିଲେ, ପୁରୁଷ ସହ ସମକକ୍ଷ ହୋଇ ସମାଜର ସକଳ ଦୁଃଖ ଦୁର୍ଗତି ଓ ସମସ୍ୟା ସଙ୍କଟର ଦୂରୀକରଣ କରିବାରେ ମୁଖ୍ୟ ଭୂମିକା ଗ୍ରହଣ କରୁ; କିନ୍ତୁ ବିନା ଆବଶ୍ୟକତାରେ ତା'ର ବିଧିପ୍ରଦତ୍ତ ନାରୀସୁଲଭ ଗୁଣାବଳୀ ମା'ର କର୍ତ୍ତବ୍ୟକୁ ଅବହେଳା କଲେ ସମାଜ ନର୍କରେ ପରିଣତ ହୋଇପଡ଼ିବ।

ସମାଜ

୨୧ ମାର୍ଚ୍ଚ ୨୦୦୧

# ଏକବିଂଶ ଶତାବ୍ଦୀ ଓ ନାରୀର ଆତ୍ମଚିନ୍ତନ

ଏକବିଂଶ ଶତାବ୍ଦୀର ପ୍ରାଥମିକ ପର୍ଯ୍ୟାୟ ଆମ ଦେଶ ପାଇଁ ବେଶ୍ ତାତ୍ପର୍ଯ୍ୟପୂର୍ଣ୍ଣ। ଦେଶ ସାଧାରଣତନ୍ତ୍ର ହାସଲ କରିବାର ସୁବର୍ଣ୍ଣ ଜୟନ୍ତୀ ଏବର୍ଷ ପାଳନ କରୁଛି। ଶିକ୍ଷା, ସଭ୍ୟତା, ବିଜ୍ଞାନ, କଳା ଓ ଅର୍ଥନୀତି କ୍ଷେତ୍ରରେ ଆମ ଦେଶ ଉଲ୍ଲେଖନୀୟ ପ୍ରଗତି ହାସଲ କରିଛି। ତଥାପି ଅନେକ ଯୁକ୍ତି ବାଢ଼ନ୍ତି, ପ୍ରାଚୀନ ଯୁଗରେ ଆର୍ଯ୍ୟ ସଭ୍ୟତା ଯେପରି ସମୃଦ୍ଧିର ଚରମ ସୀମାରେ ପହଞ୍ଚିଥିଲା, ଏବେ ତା'ର ଅବକ୍ଷୟ ଆରମ୍ଭ ହୋଇଛି। ଧୀରେ ଧୀରେ ମାନବ ସଭ୍ୟତା ଧ୍ୱଂସ ଆଡ଼କୁ ଗତି କରୁଛି। ପ୍ରାଚୀନ ସଭ୍ୟତା ସଂସ୍କୃତି ଓ ବ୍ୟକ୍ତିତ୍ୱ ସହ ସ୍ୱାଧୀନତା ପରବର୍ତ୍ତୀ ଭାରତର ସଫଳତାକୁ ତୁଳନା କରି ସେମାନେ ହତାଶ ହୋଇପଡ଼ିଛନ୍ତି। କିନ୍ତୁ ଯଦି ଟିକିଏ ସହାନୁଭୂତିର ସହ ଆମର ସ୍ୱାଧୀନତା ପରବର୍ତ୍ତୀ ଭାରତୀୟ ସମାଜକୁ ଅନୁଧ୍ୟାନ କରାଯାଏ, ପ୍ରଗତି ଓ ସମୃଦ୍ଧିର ଚକ୍ର କେତେ ବେଗରେ ଘୁରୁଛି, ତାହା ସହଜରେ ଅନୁମେୟ। ଏକ ଅନୁପାତିକ ହିସାବ କଲେ ଆମେ ଉପଲବ୍ଧି କରିବା ଦୀର୍ଘ ୫୦ ଶହ ବର୍ଷ ଭିତରେ ଭାରତବର୍ଷ ଯାହା ହାସଲ କରି ନଥିଲା ମାତ୍ର ୫୦ ବର୍ଷ ଭିତରେ ତା'ଠାରୁ ଯଥେଷ୍ଟ ଅଧିକ ହାସଲ କରିଛି। ଭୌତିକ ସ୍ତରରେ ଆମେ ଯାହା ହାସଲ କରିଛୁ ତା'ର ଯଦି ଏକ ପରିସଂଖ୍ୟାନ ଭିତ୍ତିକ ଅନୁଧ୍ୟାନ କରାଯାଏ ତାହା ଏକ ସୁଦୀର୍ଘ ନିବନ୍ଧ ହେବ, କିନ୍ତୁ ଚେତନାସ୍ତରରେ ଆମେ ଯେଉଁ ମହାର୍ଘ ସଫଳତା ହାସଲ କରିଛୁ ତାହାହିଁ ଏଠାରେ ବିଚାର୍ଯ୍ୟ।

ନାରୀ ଓ ପୁରୁଷ ସମାଜର ଦୁଇ ଅପରିହାର୍ଯ୍ୟ ଅଙ୍ଗ; ଏହା ଆଦିମ କାଳରୁ ସାବ୍ୟସ୍ତ ହୋଇଥିଲେ ସୁଦ୍ଧା ବାସ୍ତବ ଦୃଷ୍ଟିରୁ ବିଚାର କଲେ ହଜାର ହଜାର ବର୍ଷ ଧରି ନାରୀ ନିର୍ଯ୍ୟାତିତା ହିଁ ହେଉଥିଲା। ଧର୍ମ ନାଁରେ, ସଂସ୍କୃତି ନାଁରେ, ପରମ୍ପରା ନାଁରେ ପୁରୁଷକୁ ସୁହାଇଲା ଭଳି କେତେକ ବିଧି ନିର୍ଦ୍ଦେଶ ସମାଜପତିମାନେ ନିର୍ଦ୍ଧାରଣ କରିଥିଲେ - ନାରୀ ଓ ପୁରୁଷ ଭିତରେ ଭେଦାଭେଦର ଗଭୀର ସୀମାରେଖା ଟାଣି ଦେଇଥିଲେ। ଏପରିକି ନାରୀ ଜନ୍ମଟା ଅଭିଶପ୍ତ ବୋଲି ପରିଗଣିତ ହେଉଥିଲା। ପୁରୁଷ ଅପରାଧ କଲେ ତାକୁ ନାରୀ ହୋଇ ଜନ୍ମ ହେବାପାଇଁ ଅଭିଶାପ

ଦିଆଯାଉଥିଲା । ଭଗବାନ ଶ୍ରୀକୃଷ୍ଣଙ୍କ ପାଖରେ ବିଦୁରଙ୍କ ଭଳି ବିଦ୍ୱାନ ବ୍ୟକ୍ତି ମଧ୍ୟ ତାଙ୍କୁ କଦାପି ନାରୀ ଜନ୍ମ ନ ଦିଅନ୍ତୁ ବୋଲି ବର ମାଗି ନେଇଥିଲେ । ଏହା ପରୋକ୍ଷରେ ନାରୀ ସମାଜ ପାଇଁ ମର୍ଯ୍ୟାଦା ହାନିକାରକ ନୁହେଁ କି ? ତତ୍କାଳୀନ ସମାଜରେ ଭାଷା ପ୍ରୟୋଗରେ ସୁଦ୍ଧା ପୃଥକ ନୀତି ନିର୍ଦ୍ଧାରିତ ହୋଇଥିଲା । ପୁରୁଷମାନଙ୍କ ପାଇଁ ଶିଷ୍ଟ ସଂସ୍କୃତ ଭାଷା ଉଦ୍ଦିଷ୍ଟ ଥିଲା ବେଳେ ନାରୀମାନେ ପ୍ରାକୃତ ଭାଷାରେ କଥାବାର୍ତ୍ତା କରୁଥିଲେ । ଭିଟାମିନ୍‌ଯୁକ୍ତ ଖାଦ୍ୟ, କେତେକ ପୁଷ୍ଟିକାରକ ଖାଦ୍ୟ ନାରୀପାଇଁ ସମ୍ପୂର୍ଣ୍ଣ ନିଷେଧ ଥିଲା । ପୁରୁଷର ଉପଭୋଗ ପାଇଁ ନାରୀ ବିଭିନ୍ନ ପ୍ରକାର ପ୍ରସାଧନ ସାମଗ୍ରୀ ଓ ଅଳଙ୍କାର ଭୂଷିତ ହୋଇ ଚାରିକାନ୍ଥ ଭିତରେ ତା'ର ବ୍ୟକ୍ତିତ୍ୱକୁ ଅବଗୁଣ୍ଠିତ କରି ରଖୁଥିଲା । ସେହି ରକ୍ଷଣଶୀଳତାର ଦୁର୍ଗ ଭିତରୁ କେହି ଯଦି ଜ୍ୱଳାମୟୀ ନାରୀ ତାର ବ୍ୟକ୍ତିତ୍ୱକୁ ସାବ୍ୟସ୍ତ କରିବାକୁ ସାହସ କରୁଥିଲା ତା' ପାଇଁ କଠୋର ଶାସ୍ତି ବିଧାନ ଥିଲା, ସେଇଥିପାଇଁ ଋଷି ଯାଜ୍ଞବଲକ୍ୟଙ୍କୁ ତର୍କଶାସ୍ତ୍ରରେ ବିଦୁଷୀ ଗାର୍ଗୀ ପରାଜିତ କରିବାକୁ ଯିବା ସମୟରେ ଅଭିଶାପର ଭୟ ଦେଖାଇ ତାଙ୍କୁ ନୀରବ କରାଯାଇଥିଲା । ବିଦୁଷୀ ଖନାଙ୍କର ଜିହ୍ୱା ଛେଦନ କରାଯାଇଥିଲା । ଫଳତଃ ନାରୀମାନେ ସେମାନଙ୍କ ବ୍ୟକ୍ତିତ୍ୱକୁ ସଂଗୋପିତ କରି ରଖିବାକୁ ବାଧ୍ୟ ହୋଇଥିଲେ - କିନ୍ତୁ ସ୍ୱାଧୀନତା ପରେ ନାରୀ ଆଉ ତା' ବ୍ୟକ୍ତିତ୍ୱକୁ ଅବଗୁଣ୍ଠିତ କରୁନାହିଁ । ତା' ବ୍ୟକ୍ତିତ୍ୱର ପରାକାଷ୍ଠା ପ୍ରଦର୍ଶନ କରି ରାଜନୀତି କ୍ଷେତ୍ରରେ ଦେଶର ସର୍ବୋଚ୍ଚ ପଦବୀରେ ଅଧିଷ୍ଠିତା ହୋଇପାରିଛି । ମହାକାଶ ଚାରିଣୀ ହେବାର ଯୋଗ୍ୟତା ଅର୍ଜନ କରିପାରିଛି, ବିଜ୍ଞାନ ଓ ସମାଜ ସେବାରେ ନିଜର ଶେଷ ଦକ୍ଷତା ପ୍ରଦର୍ଶନ କରିଛି । କଳା, ସଂସ୍କୃତି ଓ ସାହିତ୍ୟ କ୍ଷେତ୍ରରେ ତ ସେ କେତେକାଂଶରେ ପୁରୁଷର ଦକ୍ଷତାକୁ ମଧ୍ୟ ଅତିକ୍ରମ କରିଯାଇଛି । ଏସବୁ ସମ୍ଭବ ହୋଇଛି କେବଳ ତା'ର ଆତ୍ମବିଶ୍ୱାସ ହେତୁ । ବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧ ନାରୀମାନଙ୍କ ପାଇଁ ଥିଲା ଆତ୍ମପ୍ରକାଶର ସୁବର୍ଣ୍ଣ ସକାଳ । ପୂର୍ବେ ନାରୀ ତା' ପ୍ରତି ହେଉଥିବା ଆପତ୍ତିଜନକ ବ୍ୟବହାରକୁ ପ୍ରକାଶ କରିପାରୁନଥିଲା । ଶାଶୁ, ଶ୍ୱଶୁର, ସ୍ୱାମୀ ଏପରିକି ନିଜ ପିତାମାତାଙ୍କ ଦ୍ୱାରା ମଧ୍ୟ ବିଭିନ୍ନ ଉପାୟରେ ନିର୍ଯ୍ୟାତିତ ହେଲେ ସେ ପ୍ରତିବାଦ କରୁନଥିଲା । ଯେହେତୁ ସେ କନ୍ୟା ସନ୍ତାନ ହୋଇ ଜନ୍ମ ନେଇଛି ତେଣୁ ସବୁ ନିର୍ଯ୍ୟାତନାକୁ ଭାଗ୍ୟବାଦ କହି ଆବୋରି ନେବାକୁ ହେବ, ଏହିଭଳି ଏକ ବଦ୍ଧମୂଳ ଧାରଣା ସମାଜରେ ସୃଷ୍ଟି କରାଯାଇଥଲା । କିନ୍ତୁ ସ୍ୱାଧୀନତାର ଦ୍ୱିତୀୟାର୍ଦ୍ଧରେ ନାରୀର ବ୍ୟକ୍ତିତ୍ୱ ବିକାଶ ପାଇଁ ବହୁତ ଅବସର ମିଳିଛି । ସାହସର ସହିତ ନାରୀ ତା'ର ନ୍ୟାଯ୍ୟ ପ୍ରାପ୍ୟ ପାଇଁ ଦାବୀ ଉପସ୍ଥାପନ କରିପାରୁଛି । ତା'ପ୍ରତି ହେଉଥିବା ପକ୍ଷପାତ

ଜନିତ ଅନ୍ୟାୟ ଆଚରଣକୁ ଦୃଢ଼ଭାବରେ ପ୍ରତିବାଦ କରିପାରୁଛି। ସମାଜରେ ସେ ଆଉ ପରାଙ୍ଗପୃଷ୍ଟ ନୁହେଁ, ବରଂ ସ୍ୱୟଂକ୍ରିୟ ହୋଇ ନିଜ ବ୍ୟତୀତ ଅନ୍ୟମାନଙ୍କର ଦାୟିତ୍ୱ ମଧ୍ୟ ସେ ମୁଣ୍ଡ ଉପରକୁ ନେଇପାରୁଛି। ପ୍ରାଚୀନ ନାରୀର ଧୈର୍ଯ୍ୟ ଥିଲା, ସହିଷ୍ଣୁତା ଥିଲା କିନ୍ତୁ ଆତ୍ମପ୍ରତ୍ୟୟ ନଥିଲା, ଯେଉଁ ଆତ୍ମପ୍ରତ୍ୟୟ ଫଳରେ ସେ ଆଜି ସଫଳତାର ଶୀର୍ଷ ସ୍ପର୍ଶ କରିପାରିଛି। ପୂର୍ବ କାଳରେ ଭରି ଭରି ଗହଣା, ରଙ୍ଗବେରଙ୍ଗର ଶାଢ଼ୀ ଓ ଚୁଡ଼ି ମାଳ ସଜ୍ଜିତା ହୋଇ ପୁରୁଷ ମୁଖରେ ଦେବୀ ବୋଲି ଉଚ୍ଚାରିତ ହେଉଥିଲେ ସୁଦ୍ଧା ପ୍ରକୃତରେ ସମାଜରେ ପ୍ରଭୁଥିଲେ ପୁରୁଷମାନେ, ଜଣେ ଯଦି ଅନ୍ୟଜଣକୁ ପ୍ରଭୁ ବୋଲି ସ୍ୱୀକାର କରେ, ତାହେଲେ ତା' ନିଜର ପଦବାଚ୍ୟ ନିଶ୍ଚୟ ଦାସ କିମ୍ବା ଦାସୀ ହିଁ ହେବ। କିନ୍ତୁ ଆଜିର ନାରୀ ସ୍ୱାମୀକୁ ପ୍ରଭୁ, ଦେବତା, ପତି ପରମଗୁରୁ ଏବଂ ନିଜକୁ ସ୍ୱାମୀର ଚରଣଦାସୀ, ପୂଜାରିଣୀ, କିଣାକଙ୍କରୀ ଆଦି ବିଶେଷଣକୁ ମର୍ଯ୍ୟାଦା ହାନି ଜନକ ବୋଲି ଉପଲବ୍ଧି କରିସାରିଲେଣି। ସେ ବରଂ ସ୍ୱାମୀକୁ ବହୁ ପରିମାଣରେ ଅନ୍ତରଙ୍ଗ ବନ୍ଧୁଭାବରେ ସ୍ୱୀକାର କରିବାକୁ ଚାହେଁ।

ପୁରୁଷର ସହକର୍ମିଣୀ, ସହଧର୍ମିଣୀ ଓ ସହମର୍ମିଣୀ ରୂପେ ନିଜର କର୍ମମୟ ବ୍ୟକ୍ତିତ୍ୱର ପରାକାଷ୍ଠା ପ୍ରଦର୍ଶନ କରି ସେ ବିଶ୍ୱବନ୍ଦିତା ହେବାର ଲକ୍ଷ୍ୟ ଧାର୍ଯ୍ୟ କରିଛି। ଏହାହିଁ ଏ ଶତାବ୍ଦୀର ଶ୍ରେଷ୍ଠ ସଫଳତା।

ଅନୁପମ ଭାରତ

ମାର୍ଚ୍ଚ ୩, ୨୦୦୧

# ପ୍ରଗତିର ମାପକାଠିରେ ଆଦିବାସୀ ଓ ଅଣ ଆଦିବାସୀ ମହିଳା

ଯୁଗ ଯୁଗ ଧରି ଆମ ତଥାକଥିତ ସଭ୍ୟସମାଜ ପ୍ରଗତି ନାଁରେ ଗୁଡ଼ାଏ ଯୋଜନା ଓ ପରିକଳ୍ପନା କରିଆସୁଛି। ନାରୀ ପ୍ରଗତି ପାଇଁ ବିଶ୍ୱବ୍ୟାପୀ ଆନ୍ଦୋଳନ ଚାଲୁ ରହିଛି। ନାରୀ ସଶକ୍ତିକରଣ, ନାରୀ କଲ୍ୟାଣ, ନାରୀ ସ୍ୱାଧୀନତା, ନାରୀ ସ୍ୱାବଲମ୍ବନ ଶୀଳତା ନାଁରେ ସେମାନଙ୍କୁ ବିଭିନ୍ନ ପ୍ରକାର ଶିକ୍ଷା ପ୍ରଦାନ କରାଯାଉଛି। ନାନା ତାଲିମ କେନ୍ଦ୍ର, ପାଠଚକ୍ର, କର୍ମଶାଳା ମାଧ୍ୟମରେ ସେମାନଙ୍କ ଭିତରେ ସଚେତନତା ସୃଷ୍ଟି କରାଯାଉଛି। ନାରୀଶିକ୍ଷାକୁ ପ୍ରାଥମିକ ମର୍ଯ୍ୟାଦା ଦେଇ ସେମାନଙ୍କୁ ପ୍ରଗତିଶୀଳ କରିବାପାଇଁ ସରକାରୀ ଓ ବେସରକାରୀ ଉଭୟ ସ୍ତରରେ ଉଦ୍ୟମ ଜାରି ରହିଛି, ତଥାପି ନାରୀମାନଙ୍କର ସମସ୍ୟାର ଅନ୍ତ ନାହିଁ। ନାରୀ ଧର୍ଷଣ, ବଧୂ ନିର୍ଯ୍ୟାତନା, ଯୌତୁକ ଜନିତ ହତ୍ୟା, କନ୍ୟାଭ୍ରୁଣ ହତ୍ୟା ଭଳି ଅମାନବୀୟ କାର୍ଯ୍ୟାବଳି ସମାଜରେ କମିବା ପରିବର୍ତ୍ତେ ବଢ଼ି ବଢ଼ି ଚାଲିଛି। ନାରୀଟିଏ ଶିକ୍ଷାଦୀକ୍ଷା ଗ୍ରହଣ କରି ରୋଜଗାରକ୍ଷମ ହେଲେ କାର୍ଯ୍ୟାଳୟରେ ସୁଦ୍ଧା ତାର ନାନାବିଧ ନିର୍ଯ୍ୟାତନା ଆରମ୍ଭ ହୋଇଯାଏ। ତେବେ ଏଇଠି ପ୍ରଶ୍ନ ଉଠେ, ଏ ସମସ୍ୟା କ'ଣ ଶିକ୍ଷାଦୀକ୍ଷାରୁ ଉଦ୍‌ଭୂତ ନା ଆମ ଅସ୍ଥିମଜ୍ଜାରେ ସଂଶ୍ଳିଷ୍ଟ ହୋଇ ପଡ଼ିଥିବା ଆମ ପରମ୍ପରାଗତ ସ୍ୱଭାବ ଯାହାର ଉଚ୍ଛେଦ ପାଇଁ ଆମର ସମଗ୍ର ସାମାଜିକ ପଦ୍ଧତିକୁ ବଦଳେଇବାକୁ ପଡ଼ିବ। ଏ ଦୃଷ୍ଟିରୁ ବିଚାର କଲେ ଆନୁଷ୍ଠାନିକ ଶିକ୍ଷାଦୀକ୍ଷାରୁ ବଞ୍ଚିତ ହୋଇଥିବା ଆଦିବାସୀ ମହିଳା ଚିନ୍ତା, ଚେତନା ଓ ଆତ୍ମ ବିଶ୍ୱାସରେ ଅଣ ଆଦିବାସୀ ମହିଳାଙ୍କଠାରୁ ବେଶ୍ ଅଗ୍ରସର ମନେ ହୁଅନ୍ତି।

ଆମ ସମାଜରେ ଯେଉଁ ମୁଖ୍ୟ କାରଣଗୁଡ଼ିକ ପାଇଁ ନାରୀମାନେ ନିର୍ଯ୍ୟାତନା ଭୋଗୁଛନ୍ତି ସେ ସମସ୍ୟା ଆଦିବାସୀ ମହିଳାଙ୍କ ସୀମା ସ୍ପର୍ଶ କରେ ନାହିଁ। ଆଦିବାସୀ ସମାଜରେ କନ୍ୟା ସନ୍ତାନକୁ ବୋଝ ବୋଲି ଗ୍ରହଣ କରାଯାଏ ନାହିଁ। ପୁତ୍ର ଓ କନ୍ୟା ସନ୍ତାନକୁ ସମଭାବରେ ଗୁରୁତ୍ୱ ଦିଆଯାଏ। ବରଂ ସ୍ଥଳ ବିଶେଷରେ କନ୍ୟା ସନ୍ତାନକୁ ବେଶୀ ପ୍ରାଧାନ୍ୟ ଦିଆଯାଇଥାଏ, ସେଥିପାଇଁ ସେମାନଙ୍କୁ ଗର୍ଭ ପରୀକ୍ଷା କରାଇ କନ୍ୟା ଭ୍ରୁଣକୁ ହତ୍ୟା କରିବା ଆବଶ୍ୟକ ପଡ଼େନାହିଁ। ଆଦିବାସୀ ସମାଜରେ ନାରୀକୁ ପ୍ରାଧାନ୍ୟ

ଦିଆଯାଉଥିବାରୁ ଯୌତୁକ ପ୍ରଥା ସେମାନଙ୍କର ନାହିଁ। ବରଂ ବିପକ୍ଷ କନ୍ୟାପକ୍ଷକୁ କିଛି ଟଙ୍କା (ଝୋଲାଟଙ୍କା) କୁକୁଡ଼ା, ମଦ ଓ ଭୋଜିଭାତ ଦେଇ କନ୍ୟାକୁ ବିବାହ କରିଥାନ୍ତି। କନ୍ୟାଟିର ବିବାହ ପାଇଁ ସଭ୍ୟ ସମାଜରେ କନ୍ୟାପିତାମାନେ ଯେଉଁ ଅଭାବନୀୟ ଦୁଃଖ ଯନ୍ତ୍ରଣା ଭୋଗ କରନ୍ତି ତାହାର ଶିକାର ସେମାନେ ହୁଅନ୍ତି ନାହିଁ। ତା'ଛଡ଼ା ବିବାହ ପରବର୍ତ୍ତୀ ଯୌତୁକ ଜନିତ ଗଞ୍ଜଣା ସେମାନଙ୍କର ନାହିଁ। ବଧୂହତ୍ୟା, ବଧୂ ନିର୍ଯ୍ୟାତନା ଆଦି ସମସ୍ୟାରୁ ସେମାନେ ମୁକ୍ତ। ଆଦିବାସୀ ସମାଜରେ ପରଦା ପ୍ରଥା ନାହିଁ। ଅଥଚ ଏକବିଂଶ ଶତାବ୍ଦୀର ପ୍ରାରମ୍ଭରେ ସୁଦ୍ଧା ବହୁ ମହିଳାଙ୍କୁ ବିବାହ ପରେ ଓଢ଼ଣା ଦେଇ ଚାରିକାନ୍ଥ ଭିତରେ ଆବଦ୍ଧଜୀବନ କଟେଇବାକୁ ପଡ଼ିଥାଏ। ମହିଳାଟି ଯଦି କର୍ମଜୀବୀ ହୋଇଥାଏ, ତାକୁ କିଛି ରିହାତି ମିଳିଥାଏ। ହାଟ, ବାଟ, ବଜାର, ସଉଦା ଅନେକ ପରିବାରରେ ନାରୀମାନଙ୍କ ପାଇଁ ନିଷିଦ୍ଧ ଥାଏ। କିନ୍ତୁ ଆଦିବାସୀ ସମାଜରେ ପୁରୁଷମାନଙ୍କ ଅପେକ୍ଷା ନାରୀମାନେ ହିଁ ବଜାର ହାଟ କରନ୍ତି।

ଆଦିବାସୀ ନାରୀ ନିର୍ଭରଶୀଳା ନୁହେଁ। ଆମ ସମାଜ ଭଳି ନାରୀଟିଏ ପିତା, ମାତା, ସ୍ୱାମୀ ଓ ପୁତ୍ରମାନଙ୍କ ଉପରେ ନିର୍ଭର କରି ଜୀବନ ବିତାଏ ନାହିଁ। ହେତୁ ପାଇଲାଦିନୁଁ ସେମାନେ ବଣ ବିଲ, ବାଡ଼ି କାମ, କୁଲିଭୂତି ଆଦି କରି ନିଜର ଗୁଜରାଣ ମେଣ୍ଟାଇବା ସଙ୍ଗେ ସଙ୍ଗେ ପରିବାର ପ୍ରତିପୋଷଣରେ ସହାୟକ ହୁଅନ୍ତି। ଆଦିବାସୀ ସମାଜରେ ମଦ୍ୟପାନ ସାଧାରଣ କଥା। ଅନେକ ପୁରୁଷ ନିଜର ସମସ୍ତ ରୋଜଗାର ମଦ୍ୟପାନରେ ଉଡ଼େଇ ଦିଅନ୍ତି। ଆଦିବାସୀ ମହିଳା ଏହାକୁ ଏକ ଚ୍ୟାଲେଞ୍ଜ ବୋଲି ଗ୍ରହଣ କରି ପରିବାର ପ୍ରତିପୋଷଣ କରିବାକୁ ଅଣ୍ଟାଭିଡ଼ି ବାହାରି ପଡ଼େ। ଅଥଚ ଆମ ସମାଜରେ ପୁରୁଷଟିଏ ମଦ୍ୟପ ହେଲେ ପରିବାର ଭାଙ୍ଗିରୁଜି ଛାରଖାର ହୋଇପଡ଼େ।

ଆଦିବାସୀ ରମଣୀର ଜୀବନସାଥୀ ନିର୍ବାଚନରେ ସମ୍ପୂର୍ଣ୍ଣ ସ୍ୱାଧୀନତା ରହିଛି। ପ୍ରାପ୍ତବୟସ୍କା ହେଲାପରେ ଆମ ସମାଜରେ କନ୍ୟାମାନଙ୍କ ପାଇଁ କିଛିଟା ବାଧାବନ୍ଧନ ଥାଏ। ଅଭିଭାବକଙ୍କ ବିନାନୁମତିରେ ବାହାରକୁ ଯିବା ସେମାନଙ୍କ ପାଇଁ ନିଷିଦ୍ଧ ଥାଏ। ଗାଁ ଗହଳରେ ଏବେ ସୁଦ୍ଧା ଅନେକ ବାଳିକା ବୟଃପ୍ରାପ୍ତ ହେଲା ପରେ ପୋଥିରେ ଡ଼ୋରୀ ବାନ୍ଧନ୍ତି। କିନ୍ତୁ ଆଦିବାସୀ ସମାଜରେ ପ୍ରତି ଗାଁର ଶେଷ ମୁଣ୍ଡରେ ଗୋଟିଏ ଧାଙ୍ଗଡ଼ା ଘର ଓ ଆଉ ଗୋଟିଏ ଧାଙ୍ଗଡ଼ୀ ଘର ଥାଏ। ପ୍ରତ୍ୟେକ ପ୍ରାପ୍ତ ବୟସ୍କ ଯୁବକ ଯୁବତୀ ସେଠାରେ ରାତ୍ରୀଯାପନ କରନ୍ତି। ବିଳମ୍ବିତ ରାତ୍ରି ପର୍ଯ୍ୟନ୍ତ ନାଚଗୀତର ଆସର ଜମେ। ତା' ପରେ ଧାଙ୍ଗଡ଼ା ମାନେ ଧାଙ୍ଗଡ଼ୀ ବସାକୁ ଓ ଧାଙ୍ଗଡ଼ୀମାନେ ଧାଙ୍ଗଡ଼ା ବସାକୁ ଚାଲି ଯାଆନ୍ତି। ସେଇଠି ସେମାନଙ୍କର ମନ ଦିଆନିଆ ହୁଏ ଓ ସେମାନେ ବିବାହ ସୂତ୍ରରେ ଆବଦ୍ଧ ହୁଅନ୍ତି। ଅଣ ଆଦିବାସୀ ସମାଜରେ ମହିଳାଟିଏ ନିଜକୁ ସ୍ୱାମୀର କ୍ରୀତଦାସୀ ଓ ସ୍ୱାମୀକୁ ଇହକାଳ ଓ ପରକାଳର ଦେବତା ବୋଲି ମନେକରି ସକଳ ନିର୍ଯ୍ୟାତନା ଓ ଲାଞ୍ଛନାକୁ

ବରଦାସ୍ତ କରିବା ଭଳି ଆଦିବାସୀ ମହିଳାର ମନୋବୃତ୍ତି ନୁହେଁ। ଯେତେ ଦିନ ସେମାନଙ୍କ ଭିତରେ ସ୍ନେହ, ମମତା, ପ୍ରେମ, ପ୍ରୀତି, ଉତ୍ତମ ବୁଝାମଣା ଥାଏ ଆଦିବାସୀ ମହିଳା ସ୍ୱାମୀସହ ରହିବାକୁ ପସନ୍ଦ କରେ। ଏସବୁର ବ୍ୟତିକ୍ରମ ଘଟିଲେ ମହିଳାଟି ପତି ପରିତ୍ୟାଗ କରି ଅନ୍ୟପତି ଗ୍ରହଣ କରେ। କେବଳ ବିବାହ ସମୟରେ ଦ୍ୱିତୀୟ ସ୍ୱାମୀକୁ ପ୍ରଥମ ସ୍ୱାମୀ ଦେଇଥିବା ଝୋଲା ଟଙ୍କାକୁ ଫେରେଇବାକୁ ପଡ଼ିଥାଏ। ନିଜ ଇଚ୍ଛା ବିରୁଦ୍ଧରେ ଶାଶୁଘରେ ନିର୍ଯ୍ୟାତନା ସହି ସେ ପଡ଼ି ରହେ ନାହିଁ। ଏଥିରୁ ତାର ସ୍ୱାଧୀନ ମନୋବୃତ୍ତିର ପରିଚୟ ମିଳେ।

ଆଦିବାସୀ ସମାଜରେ ନାରୀ ଧର୍ଷଣ ନାହିଁ। ଆମ ସାମଜରେ ନାରୀକୁ ଏମିତି ଲୋଭନୀୟ ବସ୍ତୁଭଳି ଗୋପନୀୟ ରଖାଯାଏ ଯେ, ସେଥିପ୍ରତି ପୁରୁଷ ମନର ଉତ୍ସୁକତା ହିଁ ତାକୁ ପାପବୋଧ ଆଡ଼କୁ ଟାଣିନିଏ। ଆମ ଆଇ, ଜେଜୀମାଆଙ୍କ ଅମଳରେ ତ ଦୁଇତିନିଟି ପିଲାର ମାଆ ହୋଇସାରିଲା ପରେ ସୁଦ୍ଧା ଦିନର ଆଲୁଅରେ ସେମାନେ ସ୍ୱାମୀମାନଙ୍କର ମୁହଁ ସୁଦ୍ଧା ଦେଖି ନଥାନ୍ତି। ଯେଉଁ ଦ୍ରବ୍ୟ ଯେତେ ଦୁର୍ଲଭ ତାହା ପ୍ରତି ସେହି ପରିମାଣରେ ଆକର୍ଷଣ ବୃଦ୍ଧିପାଏ। ଫଳତଃ ସବୁ ବିଭ୍ରାଟ ସେଇଠି ସୃଷ୍ଟି ହୁଏ। ପ୍ରାଚୀନ ଯୁଗରୁ ଏଯାବତ୍ ପ୍ରଚଳିତ ହୋଇ ଆସୁଥିବା ପରଦା ପ୍ରଥା ହିଁ ନାରୀ ଧର୍ଷଣର ଇତିହାସ ରଚିଛି। ଆଦିବାସୀ ସମାଜରେ ବାଲ୍ୟକାଳରୁ ସେମାନେ ସବୁ ପ୍ରକାର ସ୍ୱାଧୀନତା ହାସଲ କରିଥାନ୍ତି। ପୁରୁଷମାନଙ୍କ ସହ ବଣ, ଜଙ୍ଗଲ, ପାହାଡ଼ ପର୍ବତ ଘୁରିବୁଲନ୍ତି। ପାପବୋଧ ସେମାନଙ୍କ ମାନସିକତାକୁ ଛୁଏଁ ନାହିଁ। ଅଥଚ ଆଧୁନିକ ଶିକ୍ଷା ଦୀକ୍ଷା ଗ୍ରହଣ କରି ଯେଉଁ ଆଦିବାସୀ ବାଳିକା ଆମ ସଭ୍ୟ ସମାଜ ଭିତରକୁ ପଶି ଆସୁଛି, ତା' ଉପରେ ଆମ ସମାଜର ଲୋଲୁପ ଦୃଷ୍ଟି ପଡ଼ିବା ଫଳରେ ସେ ପଥଭ୍ରଷ୍ଟ ହେଉଛି। ଆଦିବାସୀ ମହିଳାଟିର ଅର୍ଥନୈତିକ ପୃଷ୍ଠଭୂମି ନ ଥାଇପାରେ, ଆନୁଷ୍ଠାନିକ ଶିକ୍ଷାଦୀକ୍ଷା ଦୃଷ୍ଟିରୁ ସେମାନେ ବହୁତ ପଛରେ ପଡ଼ି ଥାଇପାରନ୍ତି, ତଥାପି ଯେଉଁ ମୁଖ୍ୟ ସମସ୍ୟାଗୁଡ଼ିକ ପାଇଁ ଆମ ସମାଜରେ ମହିଳାମାନେ ନିର୍ଯ୍ୟାତିତା ହୁଅନ୍ତି, ଯେଉଁ ମନୋବୃତ୍ତି ସମାଜରେ ତାର ଅସ୍ତିତ୍ୱକୁ ବିପନ୍ନ କରେ ସେ ସମସ୍ୟାଗୁଡ଼ିକୁ ଆଦିବାସୀ ମହିଳା ଅତି ସାହସର ସହିତ ମୁକାବିଲା କରେ। ତେଣୁ ତଥାକଥିତ ସଭ୍ୟ ବୋଲାଉଥିବା ମହିଳାମାନଙ୍କର ଆଦିବାସୀ ମହିଳାଙ୍କଠାରୁ ଯେ ଅନେକ କିଛି ଶିଖିବାର ଅଛି, ଏଥିରେ ଦ୍ୱିମତର ଅବକାଶ ନାହିଁ।

ଯୋଜନା

ସେପ୍ଟେମ୍ବର ୨୦୦୩

# ରୂପ କନ୍ଵାରର ଅଭିଯୁକ୍ତମାନେ

ନାରୀ ସହ ନିଆଁର ସମ୍ପର୍କ ବହୁ ପୁରାତନ, ପ୍ରାଚୀନ କାଳରୁ ନାରୀ ଓ ନିଆଁ ସମ୍ପର୍କୀୟ ବହୁ ତଥ୍ୟ କାହାଣୀ କିମ୍ବଦନ୍ତୀ ହୋଇ ରହିଛି। ପୁରୁଷର ପରିତୃପ୍ତି ପାଇଁ ନାରୀ କେତେବେଳେ ସ୍ୱତଃ ପ୍ରବୃତ୍ତ ହୋଇ ଅଗ୍ନିରେ ପ୍ରବେଶ କରୁଥିଲା ତ କେତେବେଳେ ତାକୁ ପାରିପାର୍ଶ୍ୱିକ ପରିସ୍ଥିତି ବାଧ୍ୟ କରୁଥିଲା। ନିଜ ପବିତ୍ରତାର ପ୍ରମାଣ ଦେବାପାଇଁ ଅଗ୍ନିସ୍ନାନ କରି ନିଜକୁ ଶୁଦ୍ଧ ସୁବର୍ଣ୍ଣ ଭଳି ରଖୁଥିଲା। ସାମ୍ପ୍ରତିକ ଦୃଷ୍ଟିକୋଣରୁ ବିଚାର କଲେ ପ୍ରାଚୀନ ଯୁଗରେ ଯେଉଁ ଅଗ୍ନିପରୀକ୍ଷା କିମ୍ବା 'ଅଗ୍ନିସ୍ନାନ' ପ୍ରସଙ୍ଗ ରହିଛି ତାହା ହୋଇପାରେ ତତ୍କାଳୀନ ସମାଜର ନାରୀମାନଙ୍କ ପ୍ରତି ଦୃଷ୍ଟିଭଙ୍ଗୀ, ବିଧିବିଧାନ ଓ ଶାସନ ଶୃଙ୍ଖଳ।

ସେ ସମୟର କଠିନ ନୀତି ନିୟମ ଓ କଠୋର ଅନୁଶାସନକୁ ଅଗ୍ନିର ପ୍ରତୀକ ବୋଲି ଗ୍ରହଣ କରାଯାଇଥାଇପାରେ। ପୁରାଣ ଇତିହାସରେ ବହୁ ପ୍ରତୀକ ଅତିରଞ୍ଜନ ହୋଇ ଭିନ୍ନ ଅର୍ଥ ପ୍ରକାଶ କରିବାର ବହୁ ଦୃଷ୍ଟାନ୍ତ ରହିଛି। ସବୁକାଳ ଭଳି ସେ କାଳରେ ସୁଦ୍ଧା ପୁରୁଷ ସର୍ବସ୍ୱ ସମାଜରେ ନାରୀର ସ୍ୱର ଅତ୍ୟନ୍ତ ଦୁର୍ବଳ ଥିଲା। ଅଗ୍ନିରେ ପ୍ରବେଶ କଲା ଭଳି ଜ୍ୱାଳା ଯନ୍ତ୍ରଣା ସହ୍ୟ କରି ଅତ୍ୟନ୍ତ ସତର୍କତାର ସହ ତାକୁ ସଂଯମ ଜୀବନଯାପନ କରିବାକୁ ପଡ଼ୁଥିଲା। ତଥାପି ତାକୁ ତ୍ରାହି ମିଳୁନଥିଲା। ଏ ପ୍ରସଙ୍ଗରେ ପୁରାଣ କାବ୍ୟ ଅନୁଯାୟୀ ଅଗ୍ନିପରୀକ୍ଷା ଦେଇଥିଲେ ସୀତା, ଗୋଟିଏ ପତିର ଉପଭୋଗ୍ୟ ହୋଇ ସାରିଲା ପରେ ପ୍ରତିଦିନ ଅଗ୍ନିସ୍ନାନ କରି ନିଜକୁ ଶୁଦ୍ଧ ସୁବର୍ଣ୍ଣ କରି ୨ୟ ପତି ପାଖକୁ ଯାଉଥିଲେ ଦ୍ରୌପଦୀ। ପୁରାଣ ଅନୁଯାୟୀ, ସେ ଯେହେତୁ ଥିଲେ ଅଯୋନି ସମ୍ଭୂତା ଓ ତାଙ୍କର ଅନ୍ୟନାମ ଥିଲା ଯାଜ୍ଞସେନୀ - ସେହେତୁ ସେ ମହାମାୟା ରୂପରେ ଏହି ଅଲୌକିକ ପବିତ୍ର ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ। ଅବଶ୍ୟ ସମୟ ବିତିଯିବା ପରେ ସେହିଭଳି ନାରୀଙ୍କ ଆଦର୍ଶକୁ ନେଇ ଅନେକ ମତପାର୍ଥକ୍ୟ ରହି ଆସିଛି।

ମଧ୍ୟଯୁଗରେ ମୃତସ୍ୱାମୀର ଜଳନ୍ତା ଜୁଇରେ ଜୀବନ୍ତ ଦଗ୍ଧ ହେବା କଥା ନିରାଟ ସତ୍ୟ। ଏହା ଥିଲା ତତ୍‌କାଳୀନ ନାରୀର କପାଳ ଲିଖନ। ରାଜପୁତ

ରମଣୀ ମହାରାଣୀ ପଦ୍ମିନୀଙ୍କ ସହିତ କାହିଁ କେତେ ବୀର ରମଣୀକୁ ଏ°ଅଗ୍ନି ଗ୍ରାସ କରିଛି ତାର ହିସାବ ଇତିହାସ ସୁଦ୍ଧା ରଖିପାରିନାହିଁ। ତଥାପି ଏ ଅଗ୍ନିର ସର୍ବଗ୍ରାସୀ ତୃଷା ପ୍ରଶମିତ ହୋଇନାହିଁ। କେତେ ଯୁଗରେ କେତେ ଢ଼ଙ୍ଗରେ, କେତେ ରଙ୍ଗରେ ସେ ନାରୀସହ ଅଙ୍ଗାଙ୍ଗୀ ଭାବେ ଜଡ଼ିତ ହୋଇ ପଡ଼ିଛି। ପ୍ରାଚୀନ ଯୁଗର ନାରୀ ଓ ନିଆଁ ପ୍ରସଙ୍ଗ ମଧ୍ୟଯୁଗକୁ ନେଲା ଭିନ୍ନରୂପ। ପ୍ରାଚୀନ ଯୁଗର ସ୍ୱେଚ୍ଛାକୃତ ଅଗ୍ନି ସ୍ନାନ ମଧ୍ୟଯୁଗ ବେଳକୁ ବାଧ୍ୟତାମୂଳକ ପ୍ରଥା ହୋଇପଡ଼ିଲା। ମୃତ ସ୍ୱାମୀର ଚିତାରେ ଯଦି ସେ ସ୍ୱତଃ ପ୍ରବେଶ କରୁନଥିଲା, ତାକୁ ଜବରଦସ୍ତ ତାର ଆତ୍ମୀୟ ସ୍ୱଜନମାନେ ସେଥିରେ ନିକ୍ଷେପ କରୁଥିଲେ। ତାର ଆର୍ତ୍ତଚିତ୍କାରକୁ ଶଙ୍ଖ, ହୁଳହୁଳି, ଘଣ୍ଟ ଓ ମୃଦଙ୍ଗ ଧ୍ୱନିରେ ଚପାଇ ଦିଆଯାଉଥିଲା।

ନିଆଁର ସେ ଲେଲିହାନ ସର୍ବଧ୍ୱଂସୀ ରୂପ ସବୁଠାରୁ ନୃଶଂସ ହୋଇପଡ଼ିଛି ସାମ୍ପ୍ରତିକ ଯୁଗରେ। ଯୌତୁକ ଜୁଇରେ ଦଗ୍ଧ ହେଉଛନ୍ତି କାହିଁ କେତେ ମହିଳା। ବଧୂପୋଡ଼ି ଏ ଯୁଗର ସାଧାରଣ ଘଟଣା, କେଉଁଠି କେଉଁ ବଧୂ ଗ୍ୟାସ ଷ୍ଟୋଭ୍‌ରେ ମଲାଣି ତ କେଉଁଠି କିରୋସନୀ ଷ୍ଟୋଭ ଫାଟିଲାଣି। କେଉଁଠି ବା କିରୋସିନି କିମ୍ବା ପେଟ୍ରୋଲ ଢ଼ାଳି ଦିଆଗଲାଣି କେଉଁଠି ବି ନାରୀକୁ ପୋଡ଼ିବା ପାଇଁ ତନ୍ଦୁର ଓଭନର ଆବଶ୍ୟକତା ହେଲାଣି। ଦୁର୍ଘଟଣା ତ ନିତ୍ୟ ନୈମିତ୍ତିକ ଜୀବନରେ ଲାଗି ରହିଛି, ସେଥିରୁ ମଣିଷର ଚାରା ନାହିଁ। କିନ୍ତୁ ସବୁ ଅଘଟଣ ଆକସ୍ମିକ ନୁହେଁ। କେତେକ ସୁଚିନ୍ତିତ ଅଘଟଣ ଦୁର୍ଘଟଣା ରୂପେ କେବଳ ନାରୀକୁ ହିଁ ଜଳେଇ ପୋଡ଼େଇ ମାରିବା ପାଇଁ ସଂଘଟିତ ହୁଏ। ପୁରୁଷ ପରାକ୍ରମଶାଳୀ। ସେ ନିଆଁରେ ଖେଳେ। ତାର ଖେଳ କାଳ ହୁଏ ନାରୀ ପାଇଁ।

'ସ୍ତ୍ରୀ' ଶବ୍ଦରେ ନାରୀର ମହନୀୟ ଗୁଣାବଳୀ ପ୍ରତିଫଳିତ ହୁଏ। ନାରୀ ପାଖରେ ସତ୍ୟ ସମ୍ମାନିତ ହୁଏ। ତାର ସତୀତ୍ୱ ବଳରେ ସେ ଅସାଧ୍ୟ ସାଧନ କରିପାରେ। କାରଣ ନାରୀର ପବିତ୍ର ଜୀବନରେ ସଂସାର ସୁଶୋଭିତ ହୋଇଥାଏ। ଜଣେ ପବିତ୍ର ରମଣୀ ସାତ ରାତିକୁ ଏକ ରାତିରେ ପରିଣତ କରିଦେଇପାରେ। ଯମଦାଢ଼ରୁ ଜୀବନକୁ ଫେରେଇ ଆଣିପାରେ। କ୍ଷୀରର ସରଭଳି ଜୀବନରେ ଯେତେ ଆତ୍ମୀୟ ସ୍ୱଜନ ଅଛନ୍ତି ସମସ୍ତଙ୍କ ଉର୍ଦ୍ଧ୍ୱରେ ରହେ ନାରୀ। ମା' ରୂପରେ, ଭଉଣୀ ରୂପରେ, ସ୍ତ୍ରୀ ରୂପରେ, ପ୍ରେମିକା ରୂପରେ, କନ୍ୟା ରୂପରେ ପ୍ରେରଣା ଦିଏ ପୁରୁଷକୁ। ସେ ରସମୟୀ। କେତେବେଳେ ବାତ୍ସଲ୍ୟ ରସରେ ସନ୍ତାନମାନଙ୍କୁ ଉଦ୍‌ବୁଦ୍ଧ କରିଦିଏ ତ ପୁଣି କେତେବେଳେ ପ୍ରେମିକା ବା ପ୍ରଣୟିନୀ ରୂପରେ ଜୀବନକୁ ରସମୟ ଓ ଛନ୍ଦମୟ କରିଦିଏ। କରୁଣ ରସର ସେ ଜୀବନ୍ତ ଅବତାର। ତା ପଣତରେ ଅନ୍ୟପାଇଁ ଅମୃତର ଧାରା ରଖିଥାଏ। କିନ୍ତୁ ଚକ୍ଷୁରେ ତାର ଅଶ୍ରୁଧାରା। ପରିବାର ଆତ୍ମୀୟ

ସ୍ୱଜନଙ୍କ ପାଇଁ ସର୍ବସ୍ୱ ତ୍ୟାଗ କରିସୁଦ୍ଧା ସେ ଉପେକ୍ଷିତା, ଅବହେଳିତା ଓ ନିର୍ଯ୍ୟାତିତାର ଜୀବନକୁ ସାଉଁଟି ନିଏ। ପୁରୁଷର ସେ ସଖି। ତାର ସୁଖରେ ଦୁଃଖରେ ହସରେ, କାନ୍ଦରେ, ଗୌରବରେ ଅପମାନରେ ସେ ସମଭାଗୀ ହୁଏ। ଅନ୍ୟମାନଙ୍କ ଆଖିର ଲୁହକୁ ସେ ଆପଣା କାନିରେ ଭିଜେଇ ନିଜ କାନ୍ଧରେ ପକେଇ ଦିଏ। ଅନ୍ୟର ଓଠରେ ହସ ଟିକେ ଦେବା ପାଇଁ କେତେ ଯେ ତ୍ୟାଗ ତପସ୍ୟା ତାର। ଅଥଚ ଏ ସବୁର ପ୍ରତିଦାନରେ ପୁରୁଷ ତାକୁ ଦିଏ 'ରଇ' (ନିଆଁ)। 'ଝିଅ ଜନମ ଚୁଲ୍ଲୀମୁଣ୍ଡକୁ' ବୋଲି କହି ଧୀରେ ଧୀରେ ତାକୁ ଜ୍ୱଳନ୍ତ ଚୁଲ୍ଲୀ ଭିତରକୁ ନିକ୍ଷେପ କରିଦିଏ। କେତେବେଳେ ସେ ନିଆଁରେ ତାର ସମଗ୍ର ଶରୀର ଜଳିଯାଏ ତ କେତେବେଳେ ନିଆଁଜଳେ ତା ଛାତିରେ, କେତେବେଳେ ବା ତା' ମନରେ।

ନାରୀ ନିଆଁକୁ ଯେତେଦିନ ପର୍ଯ୍ୟନ୍ତ ବରଦାସ୍ତ କରିଆସିଛି, ନିଜେ ଜଳି ଦୁନିଆକୁ ଆଲୋକିତ କରି ଆସିଛି ସବୁଠିକ୍ ଠାକ୍ ଚାଲିଥିବ, ତାର ଜ୍ୱଳନ ଜନିତ ଯନ୍ତ୍ରଣା ଦେଖି ସମାଜ ବେଶ୍ ସୁଖ ଉପଭୋଗ କରୁଥିବ। କିନ୍ତୁ ଥରେ ସେହି ନିଆଁ ତା ଆଖିରେ ଜଳିଲେ ଦ୍ରୌପଦୀ ଆଖିର ଅଗ୍ନି କଣିକାରେ ଦୁର୍ଯ୍ୟୋଧନର ଅନ୍ତଃପୁର ଜଳି ଉଠିଲା ଭଳି ସବୁ ଜଳି ଭସ୍ମୀଭୂତ ହୋଇଯିବ। ସେଭଳି ଏକ ପରିସ୍ଥିତି ସୃଷ୍ଟି ହେବା ପୂର୍ବରୁ ନାରୀମାନଙ୍କ ପ୍ରତି ଆମର ଯେଉଁ ପାରମ୍ପରିକ ଦୃଷ୍ଟିକୋଣ ବଦଳାଇବାକୁ ହେବ। ନାରୀ ନିର୍ଯ୍ୟାତକମାନଙ୍କୁ କଠିନରୁ କଠିନତର ସଜ୍ଜା ଦେଇ ସମାଜକୁ ସୁଧାରିବାକୁ ହେବ।

ଆଜିକୁ ଦୀର୍ଘ ୧୬ ବର୍ଷ ତଳେ ୧୯୮୩ ମସିହାରେ ରାଜସ୍ଥାନର ଏକ ନିରୀହ କନ୍ୟା ରୂପ କନ୍ୱାରକୁ ପତିର ଚିତାରେ ଜୀବନ୍ତ ଦଗ୍ଧ କରିଦିଆଯାଇଥିଲା। ଏ ଅମାନୁଷିକ କାର୍ଯ୍ୟକଳାପ ପାଇଁ ଯେଉଁ ୧୧ ଜଣକୁ ଅଭିଯୁକ୍ତ କରାହୋଇଥିଲା ସେମାନଙ୍କୁ ଦୀର୍ଘ ୧୬ ବର୍ଷ ପରେ ନିର୍ଦ୍ଦୋଷରେ ଖଲାସ କରି ଦିଆଯାଇଛି, ସେମାନଙ୍କ ଭିତରୁ ଅଧିକାଂଶ ରାଜନୀତି କ୍ଷେତ୍ରରେ ବେଶ୍ ପ୍ରତିପତ୍ତିଶାଳୀ। ସେମାନେ ପ୍ରକୃତରେ ଦୋଷୀ ଥିଲେ କି ନାହିଁ, ରୂପ କନ୍ୱାର ମୃତ ଆତ୍ମା ପ୍ରତି ନ୍ୟାୟ ପ୍ରଦର୍ଶନ ହେଲା କି ନାହିଁ - ସିଏ ତ ଭିନ୍ନ ପ୍ରସଙ୍ଗ, କିନ୍ତୁ ସାମ୍ପ୍ରତିକ ସମାଜରେ ଏଇ ରୂପ କନ୍ୱାର ମାନଙ୍କୁ ଜୀବନ୍ତ ଜଳାଇବାରେ ପରୋକ୍ଷ ବା ପ୍ରତ୍ୟକ୍ଷ ଭାବରେ ସହଯୋଗ କରୁଥିବା ପାଷାଣ୍ଡ ମାନଙ୍କର ବିଚାର ୧୬ ବର୍ଷ ପରିବର୍ତ୍ତେ ଷୋଳ ମାସ କିମ୍ବା ଷୋଳ ଦିନ ଅଥବା ଷୋଳଘଣ୍ଟା ଭିତରେ ହେଲେ ଅନ୍ତତଃ ନାରୀମାନେ ନିଜକୁ ଅଧିକ ସୁରକ୍ଷିତ ମନେ କରନ୍ତେ। ଦେଶର ଆଇନ୍ କାନୁନ୍ ସେମାନଙ୍କ ଆସ୍ଥାଭାଜନ ହୁଅନ୍ତା।

..........................................

# ନାରୀ ସଶକ୍ତିକରଣ : ଏକ ବିହଙ୍ଗାବଲୋକନ

ନାରୀ ଆଦ୍ୟା ଶକ୍ତି। ସେ ସକଳ ଶକ୍ତିର ପ୍ରେରଣା ଦାତ୍ରୀ। ଭାରତୀୟ ପରମ୍ପରାରେ ନାରୀକୁ ଶକ୍ତି ଆଖ୍ୟା ଦିଆଯାଇଛି। ପୁରୁଷ ଓ ପ୍ରକୃତିକୁ ନେଇ ସାରା ସୃଷ୍ଟି ସର୍ଜନା, ଏଠାରେ ପୁରୁଷକୁ ଶିବ ଓ ନାରୀକୁ ଶକ୍ତି ରୂପେ ପରିକଳ୍ପନା କରାଯାଇଛି। ଶକ୍ତି ବିନା ଶିବ ଆଦୌ ସମ୍ଭବ ନୁହେଁ। ଶିବଙ୍କ ପାଖରୁ ଶକ୍ତିଙ୍କୁ ବାଦ୍ ଦେଲେ ଶିବ ଶବରେ ପରିଣତ ହୋଇଯାଆନ୍ତି ବୋଲି ଆମ ସଂସ୍କୃତି କହେ। ନାରୀକୁ ପୁରୁଷଠାରୁ ଅଗ୍ରଗାମିନୀ ବୋଲି ପ୍ରମାଣ କରି ଆମେ କହୁ ସୀତାରାମ, ରାଧାକୃଷ୍ଣ, ଲକ୍ଷ୍ମୀନାରାୟଣ କିନ୍ତୁ ରାମସୀତା କୃଷ୍ଣରାଧା ନାରାୟଣ ଲକ୍ଷ୍ମୀ ନୁହଁନ୍ତି। ପୁରୁଷର ପୌରୁଷ ଯେଉଁଠି ହାର୍ ମାନେ, ନାରୀ ଦ୍ୱାରା ସେ କାର୍ଯ୍ୟ ଅଚିରେ ସାଧିତ ହୁଏ। ଆମ ପୁରାଣ ଇତିହାସରେ ଏହାର ଯଥେଷ୍ଟ ପ୍ରମାଣ ରହିଛି। ଏତେସବୁ ପ୍ରାମାଣିକତା ସତ୍ତ୍ୱେ ପୁଣି ନାରୀ ସଶକ୍ତିକରଣର ଆବଶ୍ୟକତା କାହିଁକି ପଡ଼ିଲା ? ନାରୀ ଶକ୍ତିର କ'ଣ ଅପଚୟ ଘଟିଛି ? ନାରୀ ଶକ୍ତିହୀନା ହୋଇ ପଡ଼ିଛି ? ନା ନାରୀ ଶକ୍ତିକୁ ଅବରୁଦ୍ଧ କରାଯାଇଛି ? ଯାହାର ଶକ୍ତି ଅପଚୟ ଘଟିଥାଏ ଯିଏ ଶକ୍ତିହୀନ ହୋଇ ପଡ଼ିଥାଏ ତାକୁ ସଶକ୍ତିକରଣ କରିବାର ଆବଶ୍ୟକତା ରହିଛି, କିନ୍ତୁ ଯାହାର ଶକ୍ତିକୁ ଅବରୁଦ୍ଧ କରାହୋଇଛି ହନୁମାନ ଭଳି ଯିଏ ନିଜ ଶକ୍ତିକୁ ବିସ୍ମୃତ ହୋଇପଡ଼ିଛି ତାକୁ କେବଳ ତା'ର ଶକ୍ତି ସମ୍ପର୍କରେ ସଚେତନ କରେଇ ଦେବା ହିଁ ଯଥେଷ୍ଟ।

ନାରୀ ବହୁବିଧ ଶକ୍ତିର ଅଧିକାରିଣୀ। ଏକ ସମୟରେ ଅନେକଗୁଡ଼ିଏ କାର୍ଯ୍ୟ ସାଧନ କରିବାର ସାମର୍ଥ୍ୟ ନାରୀର ରହିଛି। ସାଂପ୍ରତିକ ନାରୀ ତ ତା' ବହୁମୁଖୀ ପ୍ରତିଭାର ପରିଚୟ ପ୍ରଦାନ କରିସାରିଛି। କିନ୍ତୁ ପୁରୁଷ ତା'ର ଦକ୍ଷତାକୁ ସ୍ୱୀକୃତି ଦେବା ପାଇଁ ଆଦୌ ପ୍ରସ୍ତୁତ ନଥିଲା ଭଳି ବୋଧହୁଏ। ସାଧାରଣତଃ ରୋଜଗାର କ୍ଷମ ନାରୀଟିକୁ ସମାଜରେ ଯେତିକି ମାନ୍ୟତା ମିଳେ ଘରକଣାରେ ଦକ୍ଷତା ହାସଲ କରିଥିବା ନାରୀଟିକୁ ତାହା ମିଳେ ନାହିଁ। ଅଥଚ ପରିବାର ଗଠନରେ କର୍ମଜୀବୀ ମହିଳା ଅପେକ୍ଷା ସାଧାରଣ ଗୃହିଣୀଟିଏ କମ୍ ଶାରୀରିକ ଓ ମାନସିକ ଶକ୍ତି ବ୍ୟୟ କରିନଥାଏ। ଗୃହର ପରିବେଶ ଭିତରେ ଯାବତୀୟ ସମସ୍ୟାର ସମ୍ମୁଖୀନ

ଓ ତା'ର ସମାଧାନ ପାଇଁ ଯେ ଦକ୍ଷତାର ଆବଶ୍ୟକତା ରହିଛି ତାହା ପୁରୁଷମାନେ ହୃଦ୍‌ବୋଧ କରିବା ପାଇଁ ଆଦୌ ପ୍ରସ୍ତୁତ ନୁହଁନ୍ତି। ଅଥଚ ଦିନେ ଅଧେ ଏଇଭଳି ସମସ୍ୟାର ସମ୍ମୁଖୀନ ହେଲେ ସେମାନେ ନାକେଦମ୍ ହୋଇ ପଡ଼ନ୍ତି। ଯେତେ ଦକ୍ଷ ପିତା ହେଲେ ସୁଦ୍ଧା ମାଆର ବିକଳ୍ପ ସେ ଆଦୌ ହୋଇପାରିବ ନାହିଁ। ଅଥଚ ବାପ ଛେଉଣ୍ଡ ପିଲାଟିକୁ ଲାଳନ ପାଳନ କରିବାରେ ମାଆ ଯେତେ ଅସୁବିଧା ଅନୁଭବ କରେନାହିଁ ଯେତିକି ଅନୁଭବ କରେ ମାଆ ଛେଉଣ୍ଡ ପିଲାଟି ପାଇଁ ବାପା। ଏ ସମ୍ପର୍କରେ ଓଡ଼ିଆରେ ଗୋଟିଏ ସୁନ୍ଦର ପ୍ରବଚନ ଅଛି - ମାଆ ଖୁଦ ମୁଠାକରେ ତାକୁ ମଣିଷ କରିପାରେ କିନ୍ତୁ ବାପା ସୁନା ମୁଠାକରେ ପିଲାକୁ ମଣିଷ କରିପାରେ ନାହିଁ।

ଏହା ସର୍ବଦା ଆବଶ୍ୟକ ନୁହେଁ ଯେ ନାରୀ ମହାକାଶଚାରୀ ହେଉ, ଏଭରେଷ୍ଟ ଶୃଙ୍ଗ ଆରୋହଣ କରୁ କମ୍ପ୍ୟୁଟର ଇଞ୍ଜିନିୟର ହେଉ, ରାଜନୀତି କ୍ଷେତ୍ରରେ ସର୍ବୋଚ୍ଚ ସ୍ଥାନ ଗ୍ରହଣ କରୁ, ସାମରିକ ବାହିନୀରେ ଯୋଗ ଦେଇ ଶତ୍ରୁର ମୁକାବିଲା କରୁ, ନାରୀଶକ୍ତି ପରୀକ୍ଷଣର ମାନଦଣ୍ଡ କେବଳ ଏହିସବୁ କ୍ଷେତ୍ର ନୁହେଁ, ମହାତ୍ମାଗାନ୍ଧି ନାରୀ ଜାଗରଣର ବିରୁଦ୍ଧାଚରଣ କରୁନଥିଲେ, ଅଥଚ, ନାରୀଶକ୍ତି ସମ୍ପର୍କରେ ସେ ଥରେ କହିଥିଲେ 'ରାନ୍ଧଣା ଶାଳକୁ ଯାଉଥିବା ନାରୀର କାନ୍ଧରେ ବନ୍ଧୁକର ଆବଶ୍ୟକତା ଆଦୌ ନାହିଁ।' ନାରୀଟିଏ ତା'ର ସାମର୍ଥ୍ୟ ପ୍ରଦର୍ଶନ ପାଇଁ ପାରିବାରିକ ପରିବେଷ୍ଟନୀକୁ ମୁଖ୍ୟ ମାଧ୍ୟମ ରୂପେ ଗ୍ରହଣ କରିପାରିବ। ତା'ର ନାରୀ ସୁଲଭ ଶକ୍ତି ସାମର୍ଥ୍ୟର ସାର୍ଥକ ଉପଯୋଗ ହିଁ ସମାଜ ଗଠନ ପାଇଁ ଅତୁଳନୀୟ ଅବଦାନ। କିନ୍ତୁ ସାଂପ୍ରତିକ ବସ୍ତୁବାଦୀ ସମାଜ ନାରୀର ଏ ଅବଦାନକୁ ମାନ୍ୟତା ପ୍ରଦାନ କରୁନଥିବାରୁ ସେ ପୁରୁଷ ସହ ପ୍ରତିଯୋଗିତା ମନୋଭାବ ପୋଷଣ କରିବାକୁ ବାଧ୍ୟ ହେଉଛି।

ସଚରାଚର ଦେଖାଯାଏ ଗୋଟିଏ ପରିବାରରେ ନାରୀ ଓ ପୁରୁଷ ଉଭୟ କର୍ମଜୀବୀ ହୋଇଥିଲେ କାର୍ଯ୍ୟକ୍ଷେତ୍ରରୁ ଫେରିବା ପରେ ସ୍ତ୍ରୀଟି ସ୍ୱାମୀ ହାତକୁ ଚା' କପ୍‌ଟେ ବଢ଼େଇ ଦେଇ ନିଜେ ଘରର ଯାବତୀୟ କାର୍ଯ୍ୟ କରିବା ପାଇଁ ଅଣ୍ଟା ଭିଡ଼ି ବାହାରି ପଡ଼େ। ପୁରୁଷଟି କ୍ଳାନ୍ତ ହୋଇ ବିଶ୍ରାମ ଲୋଡ଼ିଲା ବେଳେ ନାରୀଟି ଯନ୍ତ୍ର ଭଳି ପରିଶ୍ରମ କରେ। ଶିଶୁପାଳନଠାରୁ ଆରମ୍ଭ କରି ଘରର ଅନ୍ୟାନ୍ୟ ବୟସ୍କ ବ୍ୟକ୍ତିଙ୍କୁ ସନ୍ତୁଷ୍ଟ କରିବାର ଦାୟିତ୍ୱ ନାରୀଟି ହିଁ ନିଜ ମୁଣ୍ଡକୁ ନେଇଥାଏ। କାର୍ଯ୍ୟକ୍ଷେତ୍ରକୁ ଯିବା ସମୟରେ ମଧ୍ୟ ସେମିତି, ପୁରୁଷଟି ଠିକ୍ ସମୟରେ କେମିତି ଅଫିସ୍‌ରେ ପହଞ୍ଚିବ, ସେଥିପାଇଁ ନାରୀଟିଏ ସାହାଯ୍ୟ କରେ ଅଥଚ ନିଜେ ଘରର ଯାବତୀୟ କାର୍ଯ୍ୟ ତଦାରଖ କରି ଅଫିସ୍‌ରେ ପହଞ୍ଚିବା ପାଇଁ ପାଞ୍ଚ ମିନିଟ୍ ବିଳମ୍ବ ହେଲେ

ଉପରିସ୍ଥ ଅଫିସରଙ୍କୁ କୈଫିୟତ୍ ଦେବାକୁ ପଡ଼େ। ଏ ପରିପ୍ରେକ୍ଷୀରେ କାହାକୁ ସଶକ୍ତିକରଣ କରିବାର ଆବଶ୍ୟକତା ଅନୁଭବ କରିହୁଏ ?

ନାରୀଟିଏ ସାମର୍ଥ୍ୟର ପରିମାପକ କେବଳ ରୋଜଗାର କ୍ଷମ ହେବା ନୁହେଁ। ଏମିତି ଅନେକ ନାରୀ ଅଛନ୍ତି ଯେଉଁମାନଙ୍କର ରୁଚି ଓ ଦକ୍ଷତା ବାହାରେ ଚାକିରି କରିବା ପରିବର୍ତ୍ତେ ଉତ୍କୃଷ୍ଟ ଘର କରଣାରେ ରହିଛି। ଏଠାରେ ଉଚ୍ଚଶିକ୍ଷିତା, ଅର୍ଦ୍ଧଶିକ୍ଷିତା କିମ୍ବା ଆଶିକ୍ଷିତାର ପ୍ରଶ୍ନ ଉଠେ ନାହିଁ। ଉଚ୍ଚଶିକ୍ଷିତା ନାରୀଟିଏ ସୁଦ୍ଧା ପାରିବାରିକ ପରିବେଶ ଭିତରେ ସ୍ୱାମୀ ସନ୍ତାନ ଶାଶୂ ଶ୍ୱଶୁରଙ୍କ ସେବା, ବିଭିନ୍ନ ପ୍ରକାର ରାନ୍ଧଣା, ସିଲେଇ, ଘରସଜା ଅତିଥି ଚର୍ଚ୍ଚାରେ ଆତ୍ମସନ୍ତୋଷ ଲାଭ କରନ୍ତି। ଏହାକୁ ମଧ୍ୟଯୁଗୀୟ ମାନସିକତା କହି କେହି କେହି ନାକ ଟେକିପାରନ୍ତି। କିନ୍ତୁ ନିଜର ନାରୀ ସୁଲଭ ଶକ୍ତିସାମର୍ଥ୍ୟ ପ୍ରଦାନ କରି ଯଦି ପରିବାରକୁ ସେମାନେ ସ୍ୱର୍ଗରେ ପରିଣତ କରିପାରନ୍ତି ସମାଜକୁ ଗୋଟିଏ ଗୋଟିଏ ଉତ୍ତମ ନାଗରିକ ପ୍ରଦାନ କରିବାରେ ସମାର୍ଥ୍ୟ ହୋଇପାରନ୍ତି, ଏହାଠାରୁ ବଳି ନାରୀଶକ୍ତିର ପରିଚୟ ଆଉ କ'ଣ ହୋଇପାରେ।

ନାରୀର ଅମାପ ଶକ୍ତି ରହିଛି। ସେ ଶକ୍ତିର ପୂର୍ଣ୍ଣବିକାଶ ନ ହେଲେ ସୁସ୍ଥ ସମାଜ ଗଠନ ଆଦୌ ସମ୍ଭବ ନୁହେଁ। ସେ ଶକ୍ତିର ପ୍ରକୃଷ୍ଟ ବିନିଯୋଗ ଆବଶ୍ୟକ। ପ୍ରଶାସନିକ କ୍ଷେତ୍ରରେ ଆମେ ଦେଖୁଛୁ ନାରୀଶକ୍ତିର ବିକାଶ ପାଇଁ ଯେଉଁଠି ସୁଯୋଗ ମିଳିଛି ପୁରୁଷ ସେଠି ସ୍ତବ୍ଧ ହୋଇଯାଇଛି। ସମାଜସେବା କ୍ଷେତ୍ରରେ ନାରୀ ଯେପରି ଉତ୍ସର୍ଗୀକୃତ ହୋଇ ସମାଜ ସେବାରେ ବ୍ରତୀ ହୋଇଛି, ପୁରୁଷ ତାହା ପାରିନାହିଁ। କଳା ସାହିତ୍ୟ କ୍ଷେତ୍ରରେ ନାରୀ ଲେଖନୀ ସାଂପ୍ରତିକ ଯୁଗରେ କ୍ରାନ୍ତି ସୃଷ୍ଟି କରିଛି। ଅରୁନ୍ଧତୀ ରାୟ, ଅମ୍ରିତା ପ୍ରୀତମ୍, ମହାଦେବୀ ବର୍ମା, ପ୍ରତିଭା ରାୟ, ମହେଶ୍ୱେତା ଦେବୀ ଆଦି ବ୍ୟକ୍ତିତ୍ୱ ଏ କ୍ଷେତ୍ରରେ ସର୍ବାଗ୍ରେ ସ୍ମରଣୀୟ। ରାଜନୀତି କ୍ଷେତ୍ରରେ ସୁଦ୍ଧା ନାରୀମାନଙ୍କର ପଦଧ୍ୱନି ନୈରାଶ୍ୟ ଜନକ ନୁହେଁ। ଆମର ପୂର୍ବତନ ପ୍ରଧାନମନ୍ତ୍ରୀ ସ୍ୱର୍ଗୀୟା ଇନ୍ଦିରାଗାନ୍ଧିଙ୍କର ଅସାଧାରଣ ଦକ୍ଷତା ସମ୍ପର୍କରେ ଜଣେ ଇଂରେଜ ସମାଲୋଚକ କହିଥିଲେ - ମୁଁ ଭାରତର ପାର୍ଲାମେଣ୍ଟରେ ଅନେକ ନାରୀଙ୍କ ଭିତରେ କେବଳ ଜଣେ ପୁରୁଷଙ୍କୁ ଦେଖୁଛି। ନାରୀର ସାମର୍ଥ୍ୟ ଯେ ପୁରୁଷର ସାମର୍ଥ୍ୟଠାରୁ ନଗଣ୍ୟ ନୁହେଁ ଏହା ତା'ର ବଳିଷ୍ଠ ପ୍ରମାଣ।

ନାରୀ ଦୁର୍ବଳା ନୁହେଁ, ଶକ୍ତିହୀନା ନୁହେଁ। ଯେଉଁ ପରିବେଶରେ ଯେପରି ପରିସ୍ଥିତିରେ ଥାଉନା କାହିଁକି ତା' ଦେହରେ ଶକ୍ତି ଖୁନ୍ଦି ହୋଇ ରହିଛି। ସୁସ୍ଥ ସମାଜ ଗଠନ ପାଇଁ ସେ ଶକ୍ତିର ବିନିଯୋଗ ନିହାତି ଆବଶ୍ରକ। ନାରୀକୁ ସଶକ୍ତ

କରିବା ଆଳରେ ତାକୁ ଅନୁଗ୍ରହର ପାତ୍ରୀ କରାନଯାଉ, ଦୟାର ପାତ୍ରୀ କହି ତାକୁ ନ୍ୟୁନ ବୋଧତାର ଶିକାର କରାନଯାଉ। ସେ ନିଜେ ନିଜକୁ ନ ଚିହ୍ନିବା ପର୍ଯ୍ୟନ୍ତ, ତା' ଭିତରେ ଆତ୍ମବିଶ୍ୱାସ ସୃଷ୍ଟି ନ ହେବା ପର୍ଯ୍ୟନ୍ତ କୌଣସି ମାଧ୍ୟମ ତାକୁ ଶକ୍ତିମୟୀ କରିପାରିବ ନାହିଁ। ସେଥିପାଇଁ ତା'ର ପରିସର ଆବଶ୍ୟକ। ତା' ଶକ୍ତିର ବିକାଶ ପାଇଁ ଆବଶ୍ୟକୀୟ ଭିତ୍ତିଭୂମି ନିହାତି ଜରୁରୀ। ଇତିହାସରେ ବିଦୁଷୀ ଖନାଙ୍କୁ ତାଙ୍କର ପାଣ୍ଡିତ୍ୟ ପ୍ରଦର୍ଶନ କରିବାକୁ ସୁଯୋଗ ନ ଦେଇ ଯେପରି ଜିହ୍ୱା ଛେଦନ କରାଯାଇଥିଲା, ବିଦୁଷୀ ଗାର୍ଗୀଙ୍କର ବୁଦ୍ଧିମତ୍ତାକୁ ଶିରଚ୍ୟୁତ ହେବାର ଅଭିଶାପ ଦେଇ ଅବରୁଦ୍ଧ କରାଯାଇଥିଲା, ସାଂପ୍ରତିକ ସମାଜରେ ଯେପରି ସେହି କଳଙ୍କିତ ଅଧ୍ୟାୟର ପୁନରାବୃତ୍ତି ନହୁଏ ସେଥିପ୍ରତି ପ୍ରତ୍ୟେକ ସଭ୍ୟ ଓ ସୁସ୍ଥ ନାଗରିକ ସଚେତନ ରହିବା ଆବଶ୍ୟକ। ନାରୀର ସଶକ୍ତିକରଣ ପାଇଁ କୌଣସି ବାହ୍ୟ ଶକ୍ତିର ଆବଶ୍ୟକ ନାହିଁ। ତା'ର ଅନ୍ତର୍ନିହିତ ଶକ୍ତି ଜାଗ୍ରତ ହେଲେ ସେ ଯମଦ୍ୱାରରୁ ମୃତ ସ୍ୱାମୀକୁ ଫେରାଇ ଆଣିବାରେ ସମର୍ଥ ହୋଇପାରିବ। ସାତ ରାତିକୁ ଗୋଟିଏ ରାତିରେ ପରିଣତ କରିଦେଇ ପାରିବ। ତା' ଶକ୍ତିର ସୀମା ନାହିଁ। କିନ୍ତୁ ତା' ଶକ୍ତିକୁ ସମ୍ମତି ଦେବାପାଇଁ ସମାଜରେ ଏକ ସହାନୁଭୂତିଶୀଳ ଆବେଦନ ଆବଶ୍ୟକ। ସ୍ତ୍ରୀଟିର ଉତ୍ତରୋତ୍ତର ଉନ୍ନତିରେ ଯଦି ନିଜ ସ୍ୱାମୀଟି ମଧ୍ୟ ଅସହିଷ୍ଣୁ ହୋଇ ଉଠିବ, ପରିବାରରେ ଅଶାନ୍ତ ବାତାବରଣ ସୃଷ୍ଟି କରିବ, କାର୍ଯ୍ୟ କ୍ଷେତ୍ରରେ ନାରୀ ପ୍ରତିଭାରେ ଈର୍ଷାପରାୟଣ ହୋଇ ପୁରୁଷ ସହକର୍ମୀମାନେ ତା' ବିରୁଦ୍ଧରେ ଷଡ଼ଯନ୍ତ୍ରରେ ଲିପ୍ତ ରହିବେ, ତା' ଚରିତ୍ର ସଂହାର ପାଇଁ ଶତଜିହ୍ୱ ହୋଇ ଉଠିବେ, ଏଭଳି ଅପ୍ରୀତିକର ପରିସ୍ଥିତିରୁ ମୁକ୍ତ ରହିବା ପାଇଁ ବାଧ୍ୟ ହୋଇ କଇଁଛପ ଭଳି ସେ ସଂକୁଚିତ ଜୀବନଯାପନ କରିବ। ତା' ପ୍ରତିଭାକୁ ଅବଦମିତ କରି ରଖିବ। ତେଣୁ ପ୍ରଥମେ ନାରୀ ଶକ୍ତିକୁ ସ୍ୱୀକୃତି ଦେବା ପାଇଁ ସାମାଜିକ ଭିତ୍ତିଭୂମି ଆବଶ୍ୟକ, ପୁରୁଷର ମାନସିକ ପ୍ରସ୍ତୁତି ଦରକାର। ତା'ପରେ ନାରୀର ସଶକ୍ତିକରଣ ପାଇଁ ବେଶୀ ବ୍ୟସ୍ତ ହେବାପାଇଁ ପଡ଼ିବ ନାହିଁ। ସବୁ ସ୍ୱୟଂ ସାଧିତ ହୋଇଯିବ। ସମାଜ ପ୍ରଗତି ପଥରେ ପ୍ରଧାବିତ ହେବ।

ଅନୁପମ ଭାରତ

୧୧ ଡିସେମ୍ବର, ୨୦୦୧

# ଯୁଗେ ଯୁଗେ ନାରୀ

ନ ଅରି - ନାରୀ, ଅର୍ଥାତ ଯାହାର ଶତ୍ରୁ ନାହାନ୍ତି, ସେ ହେଉଛି ନାରୀ, ସେ ଅଜାତ ଶତ୍ରୁ। ନାରୀ ଶବ୍ଦର ଉତ୍ପତ୍ତି କାଳରେ ମହାମନିଷୀମାନଙ୍କ ଦ୍ୱାରା ଏମିତି ଏକ ଶ୍ରଦ୍ଧାଶୀଳ ନାମଟିଏ ଉଦ୍ଦିଷ୍ଟ ହୋଇଥିଲା। କିନ୍ତୁ ବାସ୍ତବ ଦୃଷ୍ଟିରେ ଅନୁଧ୍ୟାନ କଲେ ଜଣାଯାଏ କନ୍ୟାଭ୍ରୁଣ ମାତୃଗର୍ଭରେ ସଂଚାର ହେବା ମୂହୁର୍ତ୍ତରୁ ଶତ୍ରୁମାନେ ତା ପିଛା ଛାଡ଼ନ୍ତି ନାହିଁ। ଯେତେବେଳେ ଗର୍ଭସ୍ଥ ସନ୍ତାନର ଲିଙ୍ଗ ନିରୂପଣ ମଣିଷର ସାଧ୍ୟ ବାହାରେ ଥିଲା ସେତେବେଳେ ଗର୍ଭବତୀ ସ୍ତ୍ରୀକୁ "ପୁତ୍ରବତୀ ଭବ" ବୋଲି ଆଶୀର୍ବାଦ ଦିଆଯାଉଥିଲା, ନାରୀଟିଏ ପାଇଁ ସର୍ବଶ୍ରେଷ୍ଠ ଆଶୀର୍ବଚନ ଥିଲା ଶତପୁତ୍ରର ଜନନୀ କିମ୍ବା ସାତପୁତ୍ରର ଜନନୀ ଇତ୍ୟାଦି। କନ୍ୟାବତୀ ହେବାପାଇଁ ଆଶୀର୍ବାଦ ଦେବାର କୌଣସିଠାରେ ଦୃଷ୍ଟାନ୍ତ ନାହିଁ, ଏପରି ଆଶୀର୍ବାଦକୁ ବରଂ ସମସ୍ତେ ଅଭିଶାପ ବୋଲି ଗ୍ରହଣ କରି ନେଉଥିଲେ।

ବୈଦିକ ଯୁଗରେ କୁହାଯାଉଥିଲା, "ଯତ୍ର ନାର୍ଯ୍ୟସ୍ତୁ ପୂଜ୍ୟନ୍ତେ ରମନ୍ତେ ତତ୍ର ଦେବତା" ଯେଉଁଠାରେ ନାରୀଙ୍କୁ ପୂଜା କରାଯାଏ ସେଠାରେ ଦେବତାମାନେ ବାସ କରନ୍ତି। ଦେବୀମୂର୍ତ୍ତିକୁ ଯେପରି ମନ୍ଦିରରେ ଫୁଲଚନ୍ଦନ ଦେଇ ପୂଜା କରାଯାଏ ନାରୀମାନଙ୍କୁ ଗୃହାଭ୍ୟନ୍ତରେ ବସନଭୂଷଣ ଦେଇ ନିର୍ଜୀବ ମୂର୍ତ୍ତି ରୂପେ ପୂଜା ହିଁ କରାଯାଉଥିଲା। ତା'ର ସ୍ୱାଧିକାର ଉପରେ ଗୁରୁତ୍ୱ ଦିଆଯାଉ ନ ଥିଲା, ସେପରି ହୋଇଥିଲେ ବିଦୁଷୀ ଅପାଲାଙ୍କୁ ପତିପରିତ୍ୟକ୍ତା ହେବାକୁ ପଡ଼ିନଥାନ୍ତା, ଅସାଧାରଣ ବ୍ୟକ୍ତିତ୍ୱର ଅଧିକାରିଣୀ ଗାର୍ଗୀ ନାରୀ ହୋଇ ପୁରୁଷ ସହ ବ୍ରହ୍ମ ସଂପର୍କୀୟ ତର୍କ ବିତର୍କ କରୁଥିବାରୁ ତାଙ୍କୁ ଶିରଚ୍ୟୁତ ହେବାର ଧମକ ମିଳିନଥାନ୍ତା। ନାରୀର ଯେ ସ୍ୱତନ୍ତ୍ର ପରିଚୟ ନାହିଁ, ସେ କେବଳ ପୁରୁଷର ପରିଚୟରେ ପରିଚିତା, ପୁରୁଷ ତା'ର ରକ୍ଷାକର୍ତ୍ତା, ଏଭଳି ଗୋଟିଏ ଧାରଣା ଦେଇ ମନୁ ସଂହିତାର ନବମ ଅଧ୍ୟାୟରେ ମହର୍ଷି ମନୁ କହନ୍ତି -

"ପିତା ରକ୍ଷତି କୌମାରେ ଭର୍ତ୍ତା ରକ୍ଷତି ଯୌବନେ
ରକ୍ଷନ୍ତି ସ୍ଥବିରେ ପୁତ୍ରାଃ ନ ସ୍ତ୍ରୀ ସ୍ୱତନ୍ତ୍ର ମର୍ହତି।"

କୁମାରୀ ଅବସ୍ଥାରେ ପିତା, ଯୌବନରେ ସ୍ୱାମୀ ବାର୍ଦ୍ଧକ୍ୟରେ ପୁତ୍ର ନାରୀର ଦାୟିତ୍ୱ ନେଇଥାନ୍ତି। ନାରୀର ସ୍ୱତନ୍ତ୍ରତା ନାହିଁ। ଉପରୋକ୍ତ ଉଦ୍ଧୃତାଂଶଟି ନାରୀଜାତିର ପ୍ରଗତି ପାଇଁ ଯେପରି ଘାତକସିଦ୍ଧ ହୋଇଛି ତାର ପଟ୍ଟାନ୍ତର ନାହିଁ ହିନ୍ଦୁଧର୍ମ ଓ ସମାଜର ଗତାନୁଗତିକ ବିଶ୍ୱାସରେ କ୍ରାନ୍ତିକାରୀ ପରିବର୍ତ୍ତନ ଆଣିଥିବା ଗୌତମ ବୁଦ୍ଧ ସୁଦ୍ଧା ନାରୀଜାତି ପ୍ରତି ସହାନୁଭୂତିଶୀଳ ଥିବାପରି ଅନୁଭୂତ ହୁଏ ନାହିଁ। ପ୍ରଥମ ପର୍ଯ୍ୟାୟରେ ତ ନାରୀମାନଙ୍କୁ ସେ ସଂଘରେ ଗ୍ରହଣ କରି ନଥିଲେ, ୨ୟ ପର୍ଯ୍ୟାୟରେ ଭିକ୍ଷୁଣୀମାନଙ୍କ ପାଇଁ ଯେଉଁ ସଂଘ ପ୍ରତିଷ୍ଠା କଲେ ତାର ହର୍ତ୍ତାକର୍ତ୍ତା ଥିଲେ ପୁରୁଷ ଭିକ୍ଷୁ। ଭିକ୍ଷୁମାନଙ୍କର ଅନୁଶାସନରେ ହିଁ ଭିକ୍ଷୁଣୀ ସଂଘ ଚାଲିଥିଲା, ନାରୀମାନଙ୍କୁ ସଂଘରେ ସ୍ଥାନ ଦେଲାପରେ ଗୌତମ ବୁଦ୍ଧ ଥରେ ଶିଷ୍ୟ ଆନନ୍ଦକୁ କହିଥିଲେ, "ମୁଁ ଯେଉଁ ନୂତନ ଧର୍ମ ପ୍ରଚଳନ କଲି ତାହା ପୃଥିବୀରେ ପାଞ୍ଚ ହଜାର ବର୍ଷ ପର୍ଯ୍ୟନ୍ତ ବଞ୍ଚି ରହିଥାନ୍ତା, କିନ୍ତୁ ନାରୀମାନଙ୍କୁ ସଂଘଭୁକ୍ତ କରିବା ଦ୍ୱାରା ଏହାମାତ୍ର ପାଞ୍ଚଶହ ବର୍ଷ ପର୍ଯ୍ୟନ୍ତ ତିଷ୍ଠି ରହିବ।"

ଏତେସବୁ ପ୍ରତିକୂଳ ପରିସ୍ଥିତିରେ ସୁଦ୍ଧା ସ୍ଥଳେ ସ୍ଥଳେ ଅସାଧାରଣ ପ୍ରଜ୍ଞାସମ୍ପନ୍ନା ନାରୀ ଆପଣାର ଆତ୍ମ ପରିଚୟ ଲୋଡ଼ିଛନ୍ତି, କିନ୍ତୁ ପୁରୁଷ ଦମିତ ସମାଜରରେ ସେ ସବୁ ସ୍ୱର ଅତି କ୍ଷୀଣ। ନାରୀ ଯେଉଁଠି ନିଜକୁ ନିଃଶେଷ କରି ପୁରୁଷର ନିଃସର୍ତ୍ତ ଆନୁଗତ୍ୟ ସ୍ୱୀକାର କରିଛି ସେଠି ନାରୀକୁ ମହିୟସୀ ଆଖ୍ୟା ଦିଆଯାଇଛି, କିନ୍ତୁ ଯେଉଁଠି ସେ ତା ପ୍ରତି ହେଉଥିବା ଅନ୍ୟାୟ ଅତ୍ୟାଚାରର ପ୍ରତିବାଦ କରି ନୀତିଗତ ପ୍ରଶ୍ନ ଉଠାଇଛି ସେଠି ସମାଜ ତାକୁ ଉଗ୍ରା, ମର୍ଯ୍ୟାଦା ଲଂଘନକାରିଣୀ, ମୁଖରା ବୋଲି ଆଖ୍ୟା ଦେଇଛି, ସମଗ୍ର ନାରୀ ଜାତିକୁ ପ୍ରତିନିଧିତ୍ୱ କରୁଥିବା ସୀତା ଓ ଦ୍ରୌପଦୀଙ୍କୁ ଏ କ୍ଷେତ୍ରରେ ଉଦାହରଣ ରୂପେ ଗ୍ରହଣ କରାଯାଇପାରେ। ରାଜା ଅନେଶ୍ୱତ ରାଣୀ ଭୋଗ କରିପାରନ୍ତି। ଏକାଧିକ ନାରୀ ଭୋଗ ପୁରୁଷର ପୁରଷାର୍ଥ। କିନ୍ତୁ ନାରୀ ଉପରେ କାହାର ଛାଇଟିକେ ପଡ଼ିଲେ ସେ ଅସତୀ ହୋଇଯାଏ, ସମାଜ ତାକୁ କଠିନ ଶାସ୍ତି ଦିଏ। ପତିଙ୍କର ପଦପ୍ରକ୍ଷାଳନ ପାଇଁ ହାତରେ ଧରିଥିବା ଜଳପାତ୍ରରେ ଆକାଶମାର୍ଗରେ ଯାଉଥିବା ଗନ୍ଧର୍ବଙ୍କ ଛାଇ ଦେଖି ରେଣୁକା ଟିକେ ଅନ୍ୟମନସ୍କ ହୋଇ ପଡ଼ିବାରୁ ତାଙ୍କୁ ହତ୍ୟା କରିବାପାଇଁ ସ୍ୱାମୀ ଜମଦଗ୍ନ୍ୟ ଋଷି ପୁତ୍ର ପର୍ଶୁରାମଙ୍କୁ ଆଦେଶ ଦେଇଥିଲେ। ଗୌତମ ଋଷିଙ୍କ

ଅଭିଶାପରେ ପଥର ପାଲଟି ଯାଇଥିବା ଅହଲ୍ୟା ଉପାଖ୍ୟାନ ତ କାହାରିକୁ ଅବିଦିତ ନାହିଁ।

ଯୁଗେଯୁଗେ ନାରୀ ପୁରୁଷର ସ୍ୱାର୍ଥସାଧନ ପାଇଁ ହିଁ ଉଦ୍ଦିଷ୍ଟ ଥିଲା, ଦରକାର ପଡ଼ିଲେ ତାକୁ ଏକାଧିକ ପତି ଗ୍ରହଣ କରିବାକୁ ବାଧ୍ୟ କରାଯାଉଥିଲା। କ୍ଷେତ୍ରଜ ସନ୍ତାନ ସୃଷ୍ଟି କରି ବଂଶରକ୍ଷା ନିମନ୍ତେ ଉପଦେଶ ଦିଆ ହେଉଥିଲା, ପୁଣି କେତେବେଳେ ଅସତୀ ଦୋଚାରୁଣୀ କହି ନିର୍ବାସନ କିମ୍ବା ମୃତ୍ୟୁଦଣ୍ଡ ଦିଆଯାଉଥିଲା। ସେ ଥିଲା ସମାଜର ଅବସ୍ଥା ବାଧ୍ୟ ଜୀବଟିଏ। ତା'ର ନିଜର ସ୍ୱତନ୍ତ୍ର ନିଷ୍ପତ୍ତି ନେବାର ଅଧିକାର ନଥିଲା। ଭାରତ ଇତିହାସରେ ମଧ୍ୟଯୁଗ ନାରୀ ନିର୍ଯ୍ୟାତନାର ସବୁ ପରିସୀମା ଅତିକ୍ରାନ୍ତ କରିଥିଲା। ବୈଦେଶିକ ଆକ୍ରମଣ ତ ଆମ ସାମାଜିକ ଜୀବନକୁ ଧ୍ୱସ୍ତ ବିଧ୍ୱସ୍ତ କରିଦେଇଥିଲା। ସେ ସମୟରେ ଅଧିକ କ୍ଷତିଗ୍ରସ୍ତ ହୋଇଥିଲେ ନାରୀମାନେ।

କନ୍ୟାପିତା ବୈଦେଶିକମାନଙ୍କ ଲୋଲୁପ ଦୃଷ୍ଟିରୁ ବଞ୍ଚେଇବା ପାଇଁ ବାଲ୍ୟାବସ୍ଥାରେ କନ୍ୟାସନ୍ତାନକୁ ବିବାହ ଦେଇ କନ୍ୟାଦାୟରୁ ମୁକ୍ତ ହୋଇ ପଡ଼ୁଥିଲେ। ବୟସର ତାରତମ୍ୟରେ ବିବାହ କରିଥିବାରୁ ବରପାତ୍ର ଆଗେ ମୃତ୍ୟୁବରଣ କରିବା ସ୍ୱାଭାବିକ ଥିଲା। ବୃଦ୍ଧ ସ୍ୱାମୀର ଚିତା ସହ ଯୁବତୀ ସ୍ତ୍ରୀଟିକୁ ଦଗ୍ଧ କରାଯାଉଥିଲା। ଏପରି ହୀନ ଓ ଜଘନ୍ୟ ପରଂପରା ସମଗ୍ର ବିଶ୍ୱରେ କୌଣସିଠାରେ ପରିଲକ୍ଷିତ ହୁଏ ନାହିଁ। ଏହି ପ୍ରଥା ଊନବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ବଳବତ୍ତର ଥିଲା। ଇଂରେଜ ସାହେବ ଲର୍ଡ ବେଣ୍ଟିକ୍, ରାଜା ରାମ ମୋହନ ରାୟ, ଈଶ୍ୱର ଚନ୍ଦ୍ର ବିଦ୍ୟାସାଗର ଆଦି ସଂସ୍କାରକମାନେ ସମାଜରେ ବାଲ୍ୟବିବାହ ପ୍ରଥା, ସତୀଦାହ ପ୍ରଥା ଆଦି ଉଠାଇ କିଛି ପରିମାଣରେ ବିଧବା ବିବାହ ପ୍ରଚଳନ କରିବାରେ ସମର୍ଥ ହୋଇଥିଲେ ସିନା କିନ୍ତୁ ନାରୀକୁ ତା'ର ପ୍ରକୃତ ଆତ୍ମପରିଚୟ ଦେବାକୁ ସମର୍ଥ ହୋଇ ନ ଥିଲେ। ନାରୀ ଭିତରେ ସୁପ୍ତ ଶକ୍ତିକୁ ଜାଗ୍ରତ କରି ରାଷ୍ଟ୍ରୀୟ ଚେତନାରେ ଉଦ୍‌ବୁଦ୍ଧ କରିବାରେ ଯେଉଁ ମହାମନିଷୀ ପ୍ରଥମଥର ପାଇଁ ସମର୍ଥ ହେଲେ ସେ ହେଉଛନ୍ତି ମହାମାନବ ମହାତ୍ମାଗାନ୍ଧୀ। ନାରୀ ଜାତିକୁ ଯେଉଁମାନେ ଅବଳା କହୁଥିଲେ, ସେମାନଙ୍କ ପ୍ରତି ସେ ବିରକ୍ତ ହେଉଥିଲେ, ତାଙ୍କ ମତରେ ଯଦି ପଶୁବଳକୁ ବଳ ବୋଲି କୁହାଯାଏ। ସେ ଦୃଷ୍ଟିରୁ ନାରୀ ନିଶ୍ଚୟ ପଛରେ, କିନ୍ତୁ ସେବା, ତ୍ୟାଗ, ସହିଷ୍ଣୁତା, ପ୍ରେମ, ସହୃଦୟତା ଆଦି ଗୁଣାବଳୀରେ ସେ ପୁରୁଷଠାରୁ କାହିଁ କେତେ ଉଚ୍ଚତର। ସେ ବୁଝିଥିଲେ ଓ ବୁଝାଉଥିଲେ, ନାରୀଶକ୍ତି ଜାଗ୍ରତ କରିବା ଅର୍ଥ କେବଳ ପୁରୁଷ ସହ ପ୍ରତିଯୋଗିତାରେ ଆଗକୁ ମାଡ଼ିଯିବା ନୁହେଁ। ପ୍ରତ୍ୟେକ ପୁରୁଷ ଭିତରେ ଯେମିତି

ଗୋଟିଏ ନାରୀଭାବ ରହିଛି, ପ୍ରତ୍ୟେକ ନାରୀ ଭିତରେ ବି ସେମିତି ଗୋଟିଏ ଗୋଟିଏ ପୁରୁଷ ଶକ୍ତି ସୁପ୍ତ ହୋଇ ରହିଛି। ସେହି ଶକ୍ତିକୁ ଜାଗ୍ରତ କରି ଆବଶ୍ୟକ ସ୍ଥଳେ ପ୍ରତିପାଦନ କଲେ ନାରୀଶକ୍ତିର ପୂର୍ଣ୍ଣାଙ୍ଗ ବିନିଯୋଗ ହୋଇ ପାରିଲା ବୋଲି ବୁଝିବାକୁ ହେବ।

ବିରାଟ ବ୍ରିଟିଶ ଶକ୍ତି ବିରୁଦ୍ଧରେ ଲଢ଼ିବା ପାଇଁ ମହାତ୍ମା ଗାନ୍ଧୀଙ୍କ ପାଖରେ ଏକମାତ୍ର ଅସ୍ତ୍ର ଥିଲା, ତାହା ହେଉଛି ଅହିଂସାର ଅସ୍ତ୍ର। ସେ ନିଜେ ସ୍ୱୀକାର କରୁଥିଲେ, ତାଙ୍କ ଭିତରେ ଯେଉଁ ନାରୀ ଭାବଟି ସୁପ୍ତ ହୋଇ ରହିଛି, ସେହି ଶକ୍ତି ହିଁ ତାଙ୍କୁ ଏଥିପାଇଁ ପ୍ରେରଣା ଦେଉଥିଲା। ଅହିଂସା ମାର୍ଗରେ ଗତି କରିବାକୁ ହେଲେ ଯେତେ ସହିଷ୍ଣୁତା, ତ୍ୟାଗ ଓ ସାହସ ଦରକାର ସବୁ ସେହି ସୁପ୍ତ ନାରୀଭାବରୁ ହିଁ ସେ ପାଇଛନ୍ତି। ତାଙ୍କର ଏ ଦର୍ଶନ ତତ୍‌କାଳୀନ ସମାଜରେ ବେଶ୍ ପ୍ରଭାବ ପକାଇ ପାରିଥିଲା। ଭାବିଲେ ଆଶ୍ଚର୍ଯ୍ୟ ଲାଗେ, ନାରୀ ମୁକ୍ତି ପାଇଁ ପ୍ରଥମେ ସ୍ୱର ଉତ୍ତୋଳନ କରିଥିବା ପାଶ୍ଚାତ୍ୟ ରାଷ୍ଟ୍ର ଯେଉଁ ସମୟକୁ ନାରୀମାନଙ୍କୁ ସାମାଜିକ ଓ ରାଜନୈତିକ ଆନ୍ଦୋଳନରେ ଭାଗଦେବା ତ ଦୂରର କଥା ଭୋଟଦାନ କ୍ଷମତା ସୁଦ୍ଧା ଦେଇ ନଥିଲା। ମାହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ସେତେବେଳକୁ ଆମ ଦେଶରେ ନାରୀମାନେ ରାଷ୍ଟ୍ରୀୟ ଜନଜାଗରଣ ସ୍ୱାଧୀନତା ସଂଗ୍ରାମରେ ପ୍ରତ୍ୟକ୍ଷ ଭାବରେ ଅଂଶଗ୍ରହଣ କରିସାରିଲେଣି। ପାଶ୍ଚାତ୍ୟ ଶିକ୍ଷା ସଭ୍ୟତାରେ ଉଚ୍ଚ ଶିକ୍ଷିତା ଶ୍ରୀମତୀ ସରୋଜିନୀ ନାଇଡ଼ୁଙ୍କଠାରୁ ପାଖରୁ ଆରମ୍ଭ କରି ରକ୍ଷଣଶୀଳ ପରିବାରର ବୋହୂ ମା ରମାଦେବୀ ପର୍ଯ୍ୟନ୍ତ ସମାଜର ପ୍ରତ୍ୟେକ ସ୍ତରର ମହିଳା ତାଙ୍କ ଆହ୍ୱାନରେ ଉଦ୍‌ବୁଦ୍ଧ ହୋଇଥିଲେ। କୌଣସି ଆନୁଷ୍ଠାନିକ ଶିକ୍ଷାଗ୍ରହଣ କରିନଥିବା ମା କସ୍ତୁରବାଙ୍କର ମଧ୍ୟ ସ୍ୱାଧୀନତା ସଂଗ୍ରାମ ପାଇଁ କମ୍ ଅବଦାନ ନାହିଁ। ନାରୀ ମୁକ୍ତି ଆନ୍ଦୋଳନର ଇତିହାସରେ ଏହାଠାରୁ ବଳି ଆଉ ସଫଳ ଉଦାହରଣ କ'ଣ?

କେବଳ ରାଷ୍ଟ୍ରୀୟ ଆନ୍ଦୋଳନରେ ସମ୍ମାନଜନକ ସ୍ଥାନଦେଇ ନାରୀଶକ୍ତିକୁ ସେ ସ୍ୱୀକୃତି ଦେଇନାହାନ୍ତି, ସେ ଭଲଭାବରେ ଜାଣିଥିଲେ, ଅର୍ଥନୈତିକ ସ୍ୱାଧୀନତା ବିନା ଯେଉଁ ସ୍ୱାଧୀନତା ତାହା କେବଳ ପ୍ରହସନ। ନାରୀ ଯଦି ଉତ୍ପାଦନକ୍ଷମ ନ ହୋଇ ନିଜର ଭରଣ ପୋଷଣ ପାଇଁ ପୁରୁଷ ଉପରେ ନିର୍ଭର କରେ, ତା'ର ସ୍ୱାଭିମାନ ଓ ମର୍ଯ୍ୟାଦା କ୍ଷୁର୍ଣ୍ଣହେବ, ତା'ର ମୁକ୍ତି ସଂଗ୍ରାମର ସ୍ୱର ଦୁର୍ବଳ ହେବ। ଅରଟରେ ସୂତା କାଟିବା ସହ ଅନ୍ୟାନ୍ୟ କୁଟୀର ଶିଳ୍ପରେ ନିୟୋଜିତ ରହିବା ପାଇଁ ଗାନ୍ଧିଜୀ ନାରୀମାନଙ୍କୁ ଉଦ୍‌ବୋଧନ ଦେଇଥିଲେ। ଅନ୍ତତଃ ନିଜର ଆବଶ୍ୟକତା ନାରୀ ନିଜେ ପୂରଣ କରୁ ବୋଲି ତାଙ୍କର ଇଚ୍ଛା ଥିଲା।

ସାଂପ୍ରତିକ ଯୁଗରେ ନାରୀ ସଶକ୍ତିକରଣ, ନାରୀମୁକ୍ତି, ନାରୀ ଜାଗରଣ ସଂପର୍କୀୟ ବହୁ କାର୍ଯ୍ୟକ୍ରମ ସରକାରୀ ଓ ବେସରକାରୀ ସ୍ତରରେ ହାତକୁ ନିଆଯାଉଛି। ଅନେକ କ୍ଷେତ୍ରରେ ଏସବୁ ଶସ୍ତା ଲୋକପ୍ରିୟତା ହାସଲ ପାଇଁ ପ୍ରଚାର ସର୍ବସ୍ୱ ହେଲାଭଳି ମନେହେଉଛି। ମହାତ୍ମା ଗାନ୍ଧୀଙ୍କର ନାରୀମୁକ୍ତି ପାଇଁ ଯେଭଳି ବାସ୍ତବବାଦୀ ଦୃଷ୍ଟିକୋଣ ଥିଲା, ଆନ୍ତରିକତା ଥିଲା, ତାହା ଅନୁଭୂତ ହେଉନାହିଁ। ଯେଉଁଦିନ ନାରୀ ନିଜେ ବୁଝିବ ତା'ର ସଂଗ୍ରାମ ପୁରୁଷ ପାଖରୁ ମୁକ୍ତିର ସଂଗ୍ରାମ ନୁହେଁ, ଯୁଗଯୁଗ ଧରି ତା'ର ନିପୀଡ଼ିତ ମନର ନ୍ୟୂନବୋଧତାରୁ ମୁକ୍ତି

ପାଇଁ ସଂଗ୍ରାମ, ସେହିଦିନ ସେ ତା'ର ସୁପ୍ତ ଶକ୍ତିକୁ ଜାଗ୍ରତ କରି, ତାର ଆତ୍ମଶକ୍ତି, ସମ୍ମାନ ଓ ସ୍ୱାଧୀକାର ସ୍ୱତନ୍ତ୍ର ପରିଚୟ ଦେବ ଏବଂ ସେହିଦିନ ନାରୀ ଆନ୍ଦୋଳନ ସଫଳ ହେଲା ବୋଲି ବୁଝିବାକୁ ହେବ।

ସର୍ବୋଦୟ

୧୫ ଅଗଷ୍ଟ, ୨୦୦୩

# ଆତଙ୍କ ଓ ଆଶ୍ୱାସନା

ଗୋଟିଏ ଭାବପ୍ରବଣତା ବଶବର୍ତ୍ତୀ ହୋଇ ଯେ କୌଣସି ନିଷ୍ପତ୍ତିର ଯଥାର୍ଥତା କିମ୍ବା ଶସ୍ତା ଲୋକପ୍ରିୟତା ହାସଲ ପାଇଁ କୌଣସି କାର୍ଯ୍ୟ ହାତକୁ ନେବା ସମାଜ ପାଇଁ ଆଦୌ ଶୁଭ ଲକ୍ଷଣ ନୁହେଁ। ଆଜିର ରାଜନୀତିରେ ମହିଳାମାନଙ୍କ ପାଇଁ ଶତକଡ଼ା ୩୩ ଭାଗ ସଂରକ୍ଷଣ ବ୍ୟବସ୍ଥା କରିବା ସେହିଭଳି ଏକ ବିବଦମାନ ପ୍ରଶ୍ନ। ଏକଥା ସତ୍ୟ ଯେ ଆମର ପୂର୍ବତନ ପ୍ରଧାନମନ୍ତ୍ରୀ ସ୍ୱର୍ଗୀୟା ଇନ୍ଦିରା ଗାନ୍ଧି, ଯାହାଙ୍କୁ ଜଣେ ଇଂରେଜ ରାଜନୀତି ନିରୀକ୍ଷକ 'ପାର୍ଲାମେଣ୍ଟର ଏକମାତ୍ର ପୁରୁଷ' ବୋଲି ଆଖ୍ୟା ଦେଇଥିଲେ, ସେ କାହାର ଦୟା ବା ଦାକ୍ଷିଣ୍ୟରେ ସଫଳତାର ଶୀର୍ଷକୁ ଉଠି ନ ଥିଲେ ପ୍ରାକ୍ ସ୍ୱାଧୀନତା ରାଜନୀତିରେ ବିଜୟଲକ୍ଷ୍ମୀ ପଣ୍ଡିତ, ସୁଚେତା କୃପାଳିନୀ, ଅରୁଣା ଆସଫ ଅଲ୍ଲୀ, ସରୋଜିନୀ ନାଇଡୁ, ରମାଦେବୀ, ମାଳତୀ ଚୌଧୁରୀ ଆଦି ମହିୟସୀ ମହିଳାମାନେ ମଧ୍ୟ କାହାରି ଅନୁଗ୍ରହର ପାତ୍ରୀ ନଥିଲେ। ସାଂପ୍ରତିକ ରାଜନୀତି କଥା ଚିନ୍ତା କରାଯାଉ - ଯେଉଁ ମୁଷ୍ଟିମେୟ ମହିଳା ସ୍ୱପ୍ରତିଭା ବଳରେ ପାର୍ଲାମେଣ୍ଟର ସଦସ୍ୟା ହୋଇଛନ୍ତି ସେମାନେ କୌଣସି ଗୁଣରେ ପୁରୁଷମାନଙ୍କଠାରୁ ନ୍ୟୂନ ନୁହନ୍ତି। ଆଜିର ରାଜନୀତିରେ ହଇଚଇ ସୃଷ୍ଟି କରୁଥିବା ଏ ପ୍ରତିଭାମୟୀମାନଙ୍କ ପାଇଁ ସଂରକ୍ଷଣ ବ୍ୟବସ୍ଥା ନିଶ୍ଚୟ ଅପମାନଜନକ। କିନ୍ତୁ ଭାରତ ଭଳି ପିତୃକୈନ୍ଦ୍ରିକ ପରିବାରଗୁଡ଼ିକରେ ଅନେକ ନାରୀଙ୍କର ପ୍ରତିଭା କେବଳ ରୋଷଇ ଘରେ ହାଣ୍ଡିଚୁଲି, ଡଙ୍କା ଚଟୁ ଭିତରେ ସୀମିତ ହୋଇ ରହୁଛି। ପିଲାଙ୍କର ଲାଳନ ପାଳନ, ସ୍ୱାମୀ, ଶ୍ୱଶୁର, ଶାଶୂ, ନଣନ୍ଦଙ୍କ ପାଇଁ ତ୍ୟାଗ ତିତିକ୍ଷା ଭିତରେ ସେମାନଙ୍କର ପ୍ରତିଭା ଶ୍ୱାସରୁଦ୍ଧ ହୋଇ ଆତ୍ମବିସର୍ଜନ ଦେଉଛି। କିଏ କହିପାରିବ - ସେଇମାନଙ୍କ ଭିତରେ ଗୋଟିଏ ଗୋଟିଏ ଇନ୍ଦିରା ଗାନ୍ଧି, ସୁଷମା ସ୍ୱରାଜ କିମ୍ବା ନଜ୍‌ମା ହେପାତୁଲ୍ଲାଙ୍କ ଭଳି ବ୍ୟକ୍ତିତ୍ୱ ଲୁକ୍କାୟିତ ହୋଇ ନ ରହିଛି ? କେବଳ ପରିବେଶ, ପରିସ୍ଥିତି ଓ ସୁଯୋଗର ଅଭାବରୁ ଅନନ୍ତ ଆକାଶକୁ ମାଠିଆ ଭିତରେ ରଖିବାର ଅପଚେଷ୍ଟା କରୁ କରୁ କେତେବେଳେ ସେମାନଙ୍କ ଜୀବନ ଦୀପ ଲିଭିଯାଉଛି, କେହି ଖବର ରଖୁ ନାହାନ୍ତି। ତେଣୁ ଶତକଡ଼ା ୩୩ ଭାଗ ମହିଳା ବିଲ୍ ଆଗତ

କରିବା ପୂର୍ବରୁ ଗୋଟିଏ କଥା ଚିନ୍ତା କରିବା। ପ୍ରକୃତରେ ଯେଉଁଠି ପ୍ରତିଭା ଅପଚୟ ହୋଇ ଯାଉଛି ତାକୁ ଚିହ୍ନଟ କରି ତାର ଯଥାଯୋଗ୍ୟ ଉପଯୋଗ କରିବା ପାଇଁ ଯଦି ଉପଯୁକ୍ତ ବ୍ୟବସ୍ଥା କରାଯାଇ ପାରିବ ତା'ହେଲେ ଏ ବିଲ୍ ପୂର୍ଣ୍ଣପ୍ରାଣରେ ସ୍ୱାଗତଯୋଗ୍ୟ। ଶତକଡା ୩୩ କାହିଁକି ଶତକଡା ୫୦ ଭାଗ ସ୍ଥାନ ସଂରକ୍ଷଣ ଆବଶ୍ୟକତା ଆମେ ଅନୁଭବ କରୁଛୁ। ଏକ ଦୁର୍ନୀତିମୁକ୍ତ ଓ ନାରୀ ସ୍ୱାର୍ଥରକ୍ଷା ପାଇଁ ଏକ ସୁସଂଗଠିତ ସରକାର ଏହାଠାରୁ ଆଉ ଅନ୍ୟ ଉପାୟରେ ସମ୍ଭବ ନୁହେଁ। କିନ୍ତୁ ଯଦି ସଂରକ୍ଷଣ ନାଁରେ କେତେକ ନ୍ୟସ୍ତ ସ୍ୱାର୍ଥ ଗୋଷ୍ଠୀ ନାରୀକୁ କେବଳ କାଠକଣ୍ଢେଇ ଭଳି ବ୍ୟବହାର କରି ନିଜର ସବୁ ପ୍ରକାର ରାଜନୀତିକ ଦୁରଭସନ୍ଧି ଚରିତାର୍ଥ କରିବାକୁ ଅପଚେଷ୍ଟା କରନ୍ତି। ତା'ହେଲେ ନିଜ ପ୍ରତିଭା ବଳରେ ଗୋଟିଏ ନାରୀ କୋଟିଏ ପୁରୁଷଙ୍କ ଯଥେଚ୍ଛାଚାରଙ୍କୁ ଦମନ କଲାଭଳି ପ୍ରତିଭା ନେଇ ନିର୍ବାଚନ ରଣାଙ୍ଗନରେ ପ୍ରତିଯୋଗିତା କରୁ। ପଞ୍ଚାୟତ ନିର୍ବାଚନରେ ପରିବା ବିକାଳୀକୁ ସରପଞ୍ଚ ଆସନରେ ବସାଇ ପରେ ଯେମିତି ତାକୁ ବିବସ୍ତ୍ର କରାଯାଉଛି, ସମ୍ବାଦପତ୍ରର ପୃଷ୍ଠାରୁ ଆମେ ପଢ଼ି ପଢ଼ି ଅତିଷ୍ଠ ହୋଇପଡିଲୁଣି। ସେଭଳି, ନାରକୀୟ ପରସ୍ଥିତିର ପୁନରାବୃତ୍ତି ନ ହେଉ। ନାରୀର ଇଛା ଓ ଅଭିଳାଷ ପ୍ରତି ସମ୍ମାନ ପ୍ରଦର୍ଶନ କରାଯାଉ। ନିଜର ପରିବାରକୁ ସ୍ୱର୍ଗରେ ପରିଣତ କରଥିବା ସୁଗୃହିଣୀକୁ ତା'ର ଇଛା ବିରେଧରେ ରାଜନିତିର ରଣାଙ୍ଗନରେ ରକ୍ତାକ୍ତ କାରନଯାଉ କିମ୍ବା ରାଜନୀତିରେ ରୁଚି ଓ ପ୍ରତିଭା ଥିବା ନାରୀଟିକୁ ଜବରଦସ୍ତ ଗୃହଜଞ୍ଜାଳ ଭିତରେ ପେଶିହେବାକୁ ଦିଆ ନଯାଉ।

ସମ୍ବାଦ

୨୩ ଅଗଷ୍ଟ ୧୯୯୮

# ନାରୀ ଜାଗରଣର ବିବର୍ତ୍ତନ ଧାରା

ନାରୀ ଜାଗରଣର ଇତିହାସ ବହୁ ପୁରାତନ। ଯୁଗେ ଯୁଗେ ନାରୀ ପୁରୁଷ ଦମିତ ସମାଜରେ ତା ପ୍ରତି ହେଉଥିବା ଅନ୍ୟାୟ ଅତ୍ୟାଚାରର ପ୍ରତିବାଦ କରିଆସିଛି। କେବଳ ସାଂପ୍ରତିକ ଯୁଗରେ ଯେ ସମାଜରେ ନାରୀ ନିର୍ଯ୍ୟାତନା ବୃଦ୍ଧି ପାଉଛି ଓ ତାପାଇଁ ପ୍ରତିବାଦର ସ୍ୱର ଉତ୍ତୋଳନ ହେଉଛି ତା ନୁହେଁ। ବହୁ ପୁରାକାଳରୁ ସମାଜରେ ନାରୀକୁ ଭିନ୍ନ ଦୃଷ୍ଟିରେ ଦେଖା ହେଉଥିଲା। ତାକୁ ସମାଜରେ ଏକ ଦ୍ୱିତୀୟ ଶ୍ରେଣୀ ନାଗରିକର ମର୍ଯ୍ୟାଦା ମିଳୁଥିଲା ପ୍ରତ୍ୟେକ ସଚେତନ ବ୍ୟକ୍ତି ତା'ପ୍ରତି ହେଉଥିବା ଅନ୍ୟାୟ ଅତ୍ୟାଚାରକୁ ପ୍ରତିରୋଧ କିମ୍ବା ପ୍ରତିବାଦ କରେ। ଏହି ପ୍ରତିବାଦ ବା ପ୍ରତିରୋଧର ସ୍ୱର ଭିନ୍ନ ଭିନ୍ନ ହୋଇପାରେ କିନ୍ତୁ ତାର ଉଦ୍ଦେଶ୍ୟ ଏକ।

ମାତ୍ର ବୈଦିକ ଯୁଗରେ ମୁଷ୍ଟିମେୟ ନାରୀ, ବିଦୁଷୀ, ପ୍ରବୀଣା, ଆଦର୍ଶ ସ୍ଥାନୀୟା ଥିଲେ ସୁଦ୍ଧା ପୁରୁଷର ଅତ୍ୟାଚାର ପ୍ରତି ସ୍ୱର ଉତ୍ତୋଳନ କରିବାର ଦୃଷ୍ଟାନ୍ତ ମିଳେ ନାହିଁ। ବରଂ ସେ ପୁରୁଷର ଅନୁଶାସନକୁ ନତ ମସ୍ତକରେ ସ୍ୱୀକାର କରିନେବାର ନଜିର ରହିଛି। ଏମିତି ଏକ ଘଟଣା ଘଟିଥିଲା ବିଦୂଷୀ ଗାର୍ଗୀଙ୍କ ଜୀବନରେ। ଶାସ୍ତ୍ରଜ୍ଞମାନଙ୍କର ତର୍କ ସଭାରେ ବ୍ରହ୍ମଜ୍ଞାନୀ ଯାଜ୍ଞବଳକ୍ୟ ବିଦୂଷୀ ଗାର୍ଗୀଙ୍କ ସହ ଶାସ୍ତ୍ର ଚର୍ଚ୍ଚା କରୁଥିଲେ। ମହର୍ଷି ଯାଜ୍ଞ ବଲ୍‌କ୍ୟ ଗାର୍ଗୀଙ୍କ ଅସାଧାରଣ ଜ୍ଞାନ ପାଖରେ ପରାଜିତ ହେବା ଆଶଙ୍କା କରି କିଛି ଗୋଧନ ଓ ସ୍ୱର୍ଣ୍ଣମୁଦ୍ରା ନେଇ ତର୍କରୁ ଓହରି ଯିବାପାଇଁ ଉପଦେଶ ଦେଇଥିଲେ। ଗାର୍ଗୀ କିନ୍ତୁ ଏଥିରେ ଏକମତ ହୋଇ ନଥିଲେ। ଫଳରେ କ୍ରୋଧିତ ଋଷି ନାରୀ ହୋଇଥିବାରୁ ତାଙ୍କର ବ୍ରହ୍ମଜ୍ଞାନ ଚର୍ଚ୍ଚା କରିବାର ଅଧିକାର ନାହିଁ, ଯଦି ସେ ସେଥିରୁ ବିରତ ନ ହୁଅନ୍ତି ତେବେ ଯାଜ୍ଞବଲ୍‌କ୍ୟଙ୍କ ଅଭିଶାପରେ ତାଙ୍କର ଶିରଚ୍ୟୁତ ହେବ ବୋଲି ଧମକ ଦେଇଥିଲେ। ଏହାପରେ ଗାର୍ଗୀ ତର୍କରୁ ଓହରି ଯାଇଥିଲେ। ଏ ପ୍ରସଙ୍ଗରେ ଅନ୍ୟଏକ ଉଦାହରଣ ଏଠାରେ ଅପ୍ରାସଙ୍ଗିକ ନୁହେଁ। ସ୍ୱାମୀ ଓ ଶ୍ୱଶୁର ରାଜସଭାରେ ଯେଉଁ ପ୍ରଶ୍ନର ଉତ୍ତର ଦେଇ ପାରୁନଥିଲେ, ବିଦୂଷୀ ଖନା ଗୃହାଙ୍ଗନ ଭିତରେ ଥାଇ ସେ ପ୍ରଶ୍ନର ସମାଧାନ

କରିଦେଇ ଥିବାରୁ ସେ ଦୁହେଁ ନିଜର ପ୍ରତିପତ୍ତି ହ୍ରାସ ହେଇଯିବା ଆଶଙ୍କାରେ ତାଙ୍କ ଜିହ୍ଵା ଛେଦନ କରିଥିଲେ। ଜିହ୍ଵା ଛେଦନ ହେବା ପୂର୍ବରୁ ଖନା ନିଜର ପାଣ୍ଡିତ୍ୟକୁ ଲିପିବଦ୍ଧ କରିବାକୁ ସେମାନଙ୍କୁ ଅନୁରୋଧ କରିଥିଲେ। ଯାହା ଆଜି ଆମେ ଖନାବଚନ ରୂପେ ପାଉ। ସେ ଯୁଗରେ ନାରୀମାନଙ୍କ ଭିତରେ ପ୍ରତିଭା ଥିଲା ସତ କିନ୍ତୁ ପୁରୁଷର ଅହଂଭାବ ନିକଟରେ ତାହା ହାର୍ ମାନୁଥିଲା। ସେଇଥିପାଇଁ ତ ନାରୀକୁ ବେଦପାଠରୁ ବଞ୍ଚିତ କରାଯାଇଥିଲା। ଯାହା ଏ ପର୍ଯ୍ୟନ୍ତ ସୁଦ୍ଧା ଏକ ବିବାଦୀୟ ପ୍ରସଙ୍ଗ ହୋଇ ରହିଯାଇଛି।

କିନ୍ତୁ ରାମାୟଣ ଯୁଗକୁ ପରିସ୍ଥିତି ଅନେକ ବଦଳି ଗଲାଣି। ରାମାୟଣର ନାୟିକ ସୀତା ଭାରତୀୟ ନାରୀମାନଙ୍କର ଆଦର୍ଶ, ସେବା, ତ୍ୟାଗ, ସତୀତ୍ଵ ଓ ସଚ୍ଚରିତ୍ରତାରେ ତାଙ୍କର ପଟାନ୍ତର ନାହିଁ। ସହିଷ୍ଣୁତାରେ ସେ ବସୁନ୍ଧରା ସଦୃଶା। ବିନା ଦୋଷରେ ତାଙ୍କ ପ୍ରତି ଯେଉଁ ଦଣ୍ଡ ବିଧାନ ହୋଇଛି ତାହା ଅତ୍ୟନ୍ତ ଅମର୍ଯ୍ୟାଦା ଜନକ। ସତୀ ସୀତାଙ୍କୁ ଅତ୍ୟାଚାରୀ ରାବଣ ଅପହରଣ କରି ନେବାର ପ୍ରସଙ୍ଗ ଏଠାରେ କୁହାଯାଉ ନାହିଁ। ଜଣେ କାମୁକ ଓ ଦୁର୍ଦ୍ଧାନ୍ତ ରାଜାର ଏତାଦୃଶ ଆଚରଣ ଇତିହାସରେ ନୂଆ ନୁହେଁ। କିନ୍ତୁ ରାମଚନ୍ଦ୍ରଙ୍କ ପରି ଜଣେ ପୁଣ୍ୟଶ୍ଳୋକ ପ୍ରଜାନୁରଞ୍ଜକ ବିଚାରବନ୍ତ ସୀତାଙ୍କ ପ୍ରତି ଯେଉଁ ଆଚରଣ କରିଛନ୍ତି ସେଥିରେ ହିଁ ତତ୍‌କାଳୀନ ସମାଜରେ ପୁରୁଷର ଦୃଷ୍ଟିକୋଣ ନାରୀ ପ୍ରତି କେମିତି ଥିଲା ତାହା ସହଜରେ ଅନୁମେୟ। ପତ୍ନୀକୁ ନିର୍ବାସିତ କରିଦେଇ ତାଙ୍କର ସୁବର୍ଣ୍ଣ ପ୍ରତିମା ନେଇ ଯଜ୍ଞକାର୍ଯ୍ୟ ସମ୍ପନ୍ନ କରିଦେଲେ ତାଙ୍କ ପ୍ରତି ଯେ ନ୍ୟାୟ ପ୍ରଦର୍ଶନ ହୋଇଗଲା, ଏକଥା ଭାବିବା ଭୁଲ। ନାରୀଟିଏକୁ ନିର୍ଦ୍ଦୋଷ ବୋଲି ଜାଣିସୁଦ୍ଧା ତା ପାଇଁ ଦଣ୍ଡ ବ୍ୟବସ୍ଥା କରିବା ଓ ବାରମ୍ବାର ଅଗ୍ନି ପରୀକ୍ଷା କରିବା ଘଟଣା ଯେକୌଣସି ସଭ୍ୟସମାଜ ବରଦାସ୍ତ କରିପାରିବ ନାହିଁ। ଏହା ନାରୀର ସ୍ଵାଧିକାର ଓ ସମ୍ମାନର ପ୍ରଶ୍ନ। ଭାରତୀୟ ନାରୀମାନଙ୍କୁ ପ୍ରତିନିଧିତ୍ଵ କରୁଥିବା ସୀତା ବା ଏହାକୁ ବରଦାସ୍ତ କରନ୍ତେ କେମିତି ? ବୋଧହୁଏ ନାରୀ ପ୍ରତି ହେଉଥିବା ପୁରୁଷର ଅତ୍ୟାଚାର ପ୍ରତି ସ୍ଵର ଉତ୍ତୋଳନ କରିବାରେ ସୀତା ହେଉଛନ୍ତି ପ୍ରଥମ ନାରୀ। ପୁରୁଷର ଅନ୍ଧବୁଝାମଣାରେ ନିଜର ସ୍ଥିତି ଜାହିର କରିବା ପାଇଁ ସେ ଯେଉଁ ସଂଗ୍ରାମ କରିଥିଲେ ତାହା ନାରୀ ଜାଗୃତିର ଆଦ୍ୟ ଶୁଭଶଙ୍ଖ।

ବାଲ୍ମିକୀ ରାମାୟଣ ଅନୁସାରେ ଲଙ୍କାରୁ ସୀତାକୁ ଉଦ୍ଧାର କଲାପରେ ରାମଚନ୍ଦ୍ର କ୍ରୋଧିତ ହୋଇ କହିଛନ୍ତି ଜଣେ ସମର୍ଥ ପୁରୁଷ ହିସାବରେ ମୁଁ ମୋର ମିତ୍ରମାନଙ୍କ ସହାୟତାରେ ରାବଣଙ୍କୁ ହତ୍ୟାକରି ଯେଉଁ ସ୍ଵର୍ଣ୍ଣ ଲଙ୍କା ଜିଣିଲି ତାହା

ପ୍ରକୃତରେ ତୁମପାଇଁ ଉଦ୍ଦିଷ୍ଟ ନଥିଲା । ଇକ୍ଷ୍ୱାକୁ ବଂଶରେ ଲାଗିଥିବା କଳଙ୍କ ଓ ଲୋକନିନ୍ଦାରୁ ମୁକ୍ତି ପାଇବା ପାଇଁ ମୁଁ ଏହା କରିଛି । ତୁମେ ପର ପୁରୁଷ ଦ୍ୱାରା ଅପହୃତ ହୋଇଥିବାରୁ ତୁମ ଚରିତ୍ର ପ୍ରତି ମୋର ସନ୍ଦେହ ସୃଷ୍ଟି ହୋଇଛି । ଚକ୍ଷୁରୋଗୀକୁ ଦୀପଶିଖା ଅସହ୍ୟ ହେଲାପରି ତୁମର ସ୍ଥିତି ମୋତେ ଅସହ୍ୟ ହେଉଛି । ତୁମକୁ ମୁଁ ମୁକ୍ତି ଦେଲି । ତୁମେ ଯୁଆଡ଼େ ଇଚ୍ଛା ସିଆଡ଼େ ଯାଇପାର । ରାମଚନ୍ଦ୍ରଙ୍କ ଏ ନିଷ୍ପତ୍ତିକୁ ସୀତା ସହଜରେ ମାନି ନେଇ ନାହାଁନ୍ତି । ସେ ଲକ୍ଷ୍ମଣଙ୍କୁ କହି ନିଜ ତରଫରୁ ଅଗ୍ନି ପରୀକ୍ଷାର ଆୟୋଜନ କରିଛନ୍ତି ଓ ସେଥିରେ ପ୍ରବେଶ କରି ନିଜ ସତୀତ୍ୱର ପରାକାଷ୍ଠା ପ୍ରଦର୍ଶନ କରିଛନ୍ତି । ଏହା ସତ୍ତ୍ୱେ ସାମାନ୍ୟ ଧୋବାଟିର କଥାରେ ସୀତାଙ୍କର ମାନସିକସ୍ଥିତି ପ୍ରତି ସହାନୁଭୂତିଶୀଳ ନ ହୋଇ ଅନ୍ତଃସତ୍ତ୍ୱା ଅବସ୍ଥାରେ ରାମଚନ୍ଦ୍ର ତାଙ୍କୁ ନିର୍ବାସନ ଦେଇଛନ୍ତି । ପରେ ଯେତେବେଳେ ଲବକୁଶଙ୍କ ପ୍ରତି କର୍ତ୍ତବ୍ୟବୋଧ ଓ ବାଲ୍ମିକୀଙ୍କ ଅନୁରୋଧରେ ସୀତାଙ୍କୁ ଗ୍ରହଣ କରିବାର ପ୍ରଶ୍ନ ଉଠିଛି, ଅଯୋଧ୍ୟାବାସୀଙ୍କ ସମ୍ମୁଖରେ ସୀତାଙ୍କର ପୁନର୍ବାର ଅଗ୍ନି ପରୀକ୍ଷା ସେ ଚାହିଁଛନ୍ତି । ଏଥର କିନ୍ତୁ ସୀତା ଭୀଷଣ ପ୍ରତିବାଦ କରିଛନ୍ତି । ସେ ପ୍ରତିବାଦ ମୌନ ହୋଇପାରେ, ଅଭିମାନ ଜର୍ଜରିତ ହୋଇପାରେ ବାରମ୍ବାର ପୁରୁଷ ଆଗରେ ଅଗ୍ନି ପରୀକ୍ଷା ଦ୍ୱାରା ନାରୀତ୍ୱକୁ ଲାଞ୍ଛିତ କରି ପୁରୁଷର ଯଥେଚ୍ଛାଚାରକୁ ସ୍ୱୀକାର କରିନାହାଁନ୍ତି । ପୁରୁଷର ଦୟାଦାକ୍ଷିଣ୍ୟକୁ ସମ୍ବଳ କରି ଜୀବନ ବିତେଇବାକୁ ଚାହିଁ ନାହାଁନ୍ତି । ପୃଥିବୀମାତା ଗର୍ଭରେ ଆଶ୍ରୟ ଲୋଡ଼ି ସେ ପାତାଳଗାମୀ ହୋଇ ପଡ଼ିଛନ୍ତି । ପ୍ରକାରାନ୍ତରେ ଏହି ଭୟଙ୍କର ଦୁଃଖଦ ଘଟଣାଟିକୁ ବାସ୍ତବ ଦୃଷ୍ଟିକୋଣରୁ ବିଚାର କଲେ ସୀତାଙ୍କର ଆତ୍ମହତ୍ୟା ହିଁ କୁହାଯିବ ।

ଯେଉଁ ସୀତାଙ୍କୁ ଆମେ ସର୍ବସଂହା ବା ସହିଷ୍ଣୁତାର ମୂର୍ତ୍ତିମନ୍ତ ଅବତାର ବୋଲି କହୁ, ପ୍ରକୃତରେ ସେ ବିଦ୍ରୋହ ଓ ବିପ୍ଳବର ଏକ ଅଗ୍ନିସ୍ଫୁଲିଙ୍ଗ ଥିଲେ । କିନ୍ତୁ ତାଙ୍କର ପ୍ରତିବାଦର ସ୍ୱରୂପ ଥିଲା ଭିନ୍ନ । ନାରୀସମାଜପ୍ରତି ପୁରୁଷର ଅନ୍ୟାୟ ବିଧିବ୍ୟବସ୍ଥା ପ୍ରତି ନିରାସକ୍ତ ନମ୍ରୟ ହୋଇ ନିର୍ବିବାଦରେ ସହ୍ୟ କରି ନାହାଁନ୍ତି । ସେତେବେଳେ ସାମାଜିକ ସ୍ଥିତି ଅନୁସାରେ ସେ ନିରବ ପ୍ରତିବାଦ ହିଁ କରିଛନ୍ତି । ସେଇ ନାରୀଟିର ଆତ୍ମବଳୀ ଯୁଗ ଯୁଗପାଇଁ ନାରୀ ସମାଜକୁ ବିପ୍ଳବର ବାର୍ତ୍ତା ଦେଇଗଲା । ପୁରୁଷର ସିଦ୍ଧାନ୍ତକୁ ତର୍ଜମା କରିବାର ପ୍ରେରଣା ଦେଇଗଲା ।

ରାମାୟଣ ପରବର୍ତ୍ତୀ ଯୁଗର ଆଉ ଜଣେ ବିପ୍ଳବିଣୀ ନାରୀ ଦୃଷ୍ଟି ସମ୍ମୁଖରେ ଉଦ୍ଭାସିତ ହୁଅନ୍ତି । ସେ ହେଉଛନ୍ତି ମହାଭାରତର ମହାନାୟିକା ଦ୍ରୌପଦୀ । ସୀତାଙ୍କ ଭଳି ଅନ୍ୟାୟ ଅତ୍ୟାଚାରର ସେ ମୌନ ପ୍ରତିବାଦ କରିନାହାନ୍ତି । ଜୀବନଟା ତାଙ୍କ

ପାଇଁ ରଣକ୍ଷେତ୍ର ପାଲଟି ଯାଇଛି। ତାଙ୍କ ପ୍ରତି ହୋଇଥିବା ଅନ୍ୟାୟ, ଅତ୍ୟାଚାରକୁ ସେ ସେହି ପୁରୁଷର ସହାୟତାରେ ଗୋଟି ଗୋଟି କରି ପ୍ରତିଶୋଧ ନେଇଛନ୍ତି। ଏପରିକି ଅତ୍ୟାଚାରୀର ରକ୍ତରେ ନିଜ ବେଣୀ ବନ୍ଧନ କରିବାର ପ୍ରତିଜ୍ଞା ନେଇ ବର୍ଷ ବର୍ଷ ଧରି ନିଜର ସୁଦୀର୍ଘ କେଶ ରାଶିକୁ ଉନ୍ମୁକ୍ତ ରଖିଛନ୍ତି। ଏଠି ସେ ନିଜେ ସିନା ଅସ୍ତ୍ରଧାରଣ କରିନାହାନ୍ତି କିନ୍ତୁ ପୁରୁଷ ହାତରେ ଅସ୍ତ୍ର ଧରାଇ ନିଜେ ପ୍ରେରଣା ଦାତ୍ରୀ ହୋଇ ଅତ୍ୟାଚାରୀର ସମୂଳେ ବିନାଶ କରିଛନ୍ତି।

ମଧ୍ୟଯୁଗରେ ନାରୀମାନଙ୍କର ଏ ସଂଗ୍ରାମର ସ୍ୱରୂପ ଆହୁରି ତୀବ୍ର ହୋଇଛି। ଏଠି ଆଉ ନାରୀ ମୌନ ପ୍ରତିବାଦ କରିନାହିଁ କିମ୍ବା ପୁରୁଷର ସହଯୋଗରେ ଶତ୍ରୁମାନଙ୍କୁ ଦମନ କରିବାର ଭୂମିକା ନେଇନାହିଁ। ନିଜେ ଘୋଡ଼ାରେ ଚଢ଼ି ହାତରେ ଖଣ୍ଡା ଖର୍ପର ଧରି ଯୁଦ୍ଧ କ୍ଷେତ୍ରରେ ଅବତୀର୍ଣ୍ଣ ହୋଇଛି। ରେଜିଆ ସୁଲ୍‌ତାନା, ରାଣୀ ଅହଲ୍ୟାବାଇ, ଝାନ୍‌ସୀ ରାଣୀ ଲକ୍ଷ୍ମୀବାଇ ଏ ସବୁର ଗୋଟିଏ ଗୋଟିଏ ଉତ୍କୃଷ୍ଟ ଉଦାହରଣ। ଏଠି ନାରୀ ତାର ସାମର୍ଥ୍ୟ ଓ ଶକ୍ତିକୁ ପ୍ରତ୍ୟକ୍ଷ ଭାବରେ ପ୍ରଦର୍ଶନ କରିବାର ଯେଉଁ ସୁଯୋଗ ପାଇଛି ତାକୁ ହାତଛଡ଼ା କରିନାହିଁ। ଜୟ ପରାଜୟକୁ ଭ୍ରୁକ୍ଷେପ ନ କରି ନିଜର ନାର୍ଯ୍ୟଦାବୀ ହାସଲ ପାଇଁ ସେ ସଂଗ୍ରାମ ଅବ୍ୟାହତ ରଖିଛି।

ସାଂପ୍ରତିକ ଯୁଗରେ ନାରୀ ଜାଗୃତିର ସ୍ୱର ଚରମ ସୀମାରେ ପହଞ୍ଚିଛି। ଅତୀତରେ ଯେଉଁଭଳି ନାରୀ ସଂଗ୍ରାମ କରୁଥିଲା, ସେ ସଂଗ୍ରାମର ସ୍ୱରୂପ ମଧ୍ୟ ବଦଳି ଯାଇଛି। ନାରୀ କେବଳ ନିଜ ପାଇଁ କିମ୍ବା ନାରୀସମାଜ ପ୍ରତି ହେଉଥିବା ଅନ୍ୟାୟ, ଅତ୍ୟାଚାର ପାଇଁ ସ୍ୱର ଉତ୍ତୋଳନ କରୁନାହିଁ, ସମାଜର ଯେକୌଣସି କୋଣରେ ଯେକୌଣସି ପ୍ରକାର ବ୍ୟତିକ୍ରମକୁ ସେ ପ୍ରଶୟ ଦେଉନାହିଁ। ଆଗଭଳି ଏକୁଟିଆ ମଧ୍ୟ ଲଢୁନାହିଁ। ସାମୁହିକ ଭାବରେ ସାଂଗଠନିକ ହୋଇ ଅନ୍ୟାୟ ଅତ୍ୟାଚାର ବିରୁଦ୍ଧରେ ସ୍ୱର ଉତ୍ତୋଳନ କରୁଛି। କୋଉଠି ଗୋଟିଏ ନାରୀ ଅତ୍ୟାଚାରିତ ହେଲେ ତା ପାଇଁ ସମଗ୍ର ଦେଶର ମହିଳା ସଂଗଠନ ମାନ ସ୍ୱର ଉତ୍ତୋଳନ କରୁଛନ୍ତି। କୋର୍ଟ କଚେରୀରେ ଉପଯୁକ୍ତ ନ୍ୟାୟ ନ ପାଇବା ପର୍ଯ୍ୟନ୍ତ ପ୍ରତ୍ୟେକ ମହିଳା ସଂଗଠନ ସଚେତନ ହୋଇଉଠୁଛନ୍ତି। ସମାଜରୁ ନିଶା ନିବାରଣ କରି ଏକ ସୁସ୍ଥ ସତେଜ ସମାଜ ଗଠନ ଉଦ୍ଦେଶ୍ୟରେ ହାତରେ ଝାଡ଼ୁ ବେଲଣା କାଠି ଧରି ସେ ରାଜରାସ୍ତାକୁ ଓହ୍ଲେଇ ଆସୁଛି। ଜଙ୍ଗଲ ସୁରକ୍ଷାପାଇଁ ସାମୁହିକ ଭାବରେ ବଣ ଜଙ୍ଗଲ ଘୁରିବୁଲୁଛି। ସମାଜରୁ ଦୁର୍ନୀତି ନିବାରଣ ପାଇଁ କର୍ମଶାଳାମାନ ଆୟୋଜନ କରୁଛି। ଦୁର୍ନୀତିଗ୍ରସ୍ତ ଲୋକଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ ପାଇଁ ସ୍ୱର

ଉତ୍ତୋଳନ କରୁଛି । ସମାଜରୁ ଦାରିଦ୍ର୍ୟ ରାକ୍ଷସକୁ ଦୂରୀକରଣ କରିବା ପାଇଁ ସ୍ୱୟଂସହାୟିକା ଦଳ ଗଠନ କରି ସମାଜର ଆର୍ଥିକ ସ୍ୱଚ୍ଛଳତା ବୃଦ୍ଧି କରୁଛି । ବନ୍ୟା ବାତ୍ୟା ମହାମାରୀ ଭୂକମ୍ପ ଆଦି ପ୍ରାକୃତିକ ବିପର୍ଯ୍ୟୟ ବେଳେ ସେମାନଙ୍କ ସଂଗଠନ ଅସହାୟ ପ୍ରପୀଡ଼ିତ ମାନଙ୍କର ସେବା କରିବାକୁ ଆଗେଇ ଆସୁଛନ୍ତି । ସରକାରୀ ସ୍ତରରେ ପ୍ରୋତ୍ସାହନ ଦେଇ ଯେଉଁଠି ନାରୀ ମାନଙ୍କୁ ପ୍ରଗତିଶୀଳା କରାଯାଉଛି ତାର ପ୍ରଭାବ ଭିନ୍ନ । କିନ୍ତୁ ବିନା ସରକାରୀ ସାହାଯ୍ୟରେ ଯେଉଁଠି ନାରୀ ଜାଗୃତିର ସ୍ୱର ଶୁଭୁଛି ତାହାର ଏକ ଚିରନ୍ତନୀ ପ୍ରଭାବ ରହିଛି । ସ୍ୱତଃ ପ୍ରବୃତ୍ତ ହୋଇ ଏକ ପ୍ରତିବଦ୍ଧତାର ସହ ନିଜକୁ ତଥା ସମାଜକୁ ସୁଧାରିବା ପାଇଁ ଯେପରି ଅଗ୍ରସର ହେଉଛି ତାହା ଆଗାମୀ ପୀଢ଼ିଙ୍କ ପାଇଁ ନିଶ୍ଚୟ ଶୁଭ ସୂଚକ । ଏଥିରେ ସନ୍ଦେହର ଅବକାଶ ନାହିଁ । ନାରୀ ଜାଗୃତିର ବିବର୍ତ୍ତନରେ ସାଂପ୍ରତିକ ଯୁଗ ଅନେକ ସମ୍ଭାବନାରେ ଅନ୍ତର୍ଗଭା । ସେଥିପାଇଁ ସମାଜର ସକଳ ସ୍ତରରୁ ସଦିଚ୍ଛା, ସହାନୁଭୂତି ଓ ଶୁଭ କାମନା ରହିଲେ ଦେଶ ଓ ଜାତିର ଶ୍ରୀବୃଦ୍ଧି ସାଧନ ହୋଇପାରିବ ।

ଯୋଜନା

# ନାରୀ ରତ୍ନ ନୁହେଁ ଶକ୍ତି

ରତ୍ନ ଓ ଶକ୍ତି ମଧ୍ୟରେ ଅର୍ଥଗତ ପାର୍ଥକ୍ୟ ହେଉଛି ରତ୍ନଏକ ମୂଲ୍ୟବାନ ବସ୍ତୁ। ଏହାକୁ ମାଧ୍ୟମ କରି କ୍ରୟ ବିକ୍ରୟ କରାଯାଇପାରେ। ବ୍ୟକ୍ତିର ଶୋଭା ବର୍ଦ୍ଧନ ପାଇଁ ଏହାକୁ ଅଳଙ୍କର ରୁପେ ଗ୍ରହଣ କରାଯାଇପାରେ। ବିନମୟରେ କାର୍ଯ୍ୟ ହାସଲ କରାଯାଇପାରେ। ମାତ୍ର ଏହା ନିଜେ କିଛି କରେନାହିଁ। ଏହାକୁ ପୁରଷ୍କାର ସ୍ୱରୁପ ଅନ୍ୟକୁ ଅର୍ପଣ କରାଯାଇ ଥାଏ ଏହା କେବଳ ନିର୍ଜୀବ ବସ୍ତୁଟିଏ। କିନ୍ତୁ ଶକ୍ତିର ଅର୍ଥ ଭିନ୍ନ। ସେ ନିଜେ ଗଢେ, ନିଜେ ଭାଙ୍ଗେ, କେବଳକିଣବିକା ଓ ଆନ ପ୍ରଦାନ ପାଇଁ ଏହାକୁ ବ୍ୟବହାର କଲେ କାର ମୌଳିକ ମଯ୍ୟାଦା କ୍ଷୂର୍ଣ୍ଣ ହୋଇଥାଏ। ଶକ୍ତିର ଯଥାଯୋଗ୍ୟ ବିନିଯୋଗ ହୋଇ ପାରେନାହିଁ। ଏ ଦୃଷ୍ଟିରୁ ବିଚାର କଲେ ହୃଦ୍‌ବୋଧ ହୁଏ, ସମାଜଗଠନର ଏକ ଗୁରୁତ୍ୱପୂର୍ଣ୍ଣ ଅଙ୍ଗ ନାରୀକୁ ଆମର ପାରଂପାରକ ଦୃଷ୍ଟିକୋଣ ରତ୍ନରୁପେ ଗ୍ରହଣ କରି ନାରୀ ଶକ୍ତି ପ୍ରତି ଯଥେଷ୍ଟ ଅବମାନନା ପ୍ରଦର୍ଶନ କରିଛି।

କେବଳ ଆମ ଭରତୀୟ ଦର୍ଶନ ନୁହେଁ, ବିଶ୍ୱର ପ୍ରତ୍ୟେକ ସଭ୍ୟତା ପ୍ରକୃତି ଓ ପୁରୁଷ ଉଭୟଙ୍କ ସମ୍ମିଶ୍ରଣରେ ସୃଷ୍ଟି ସଂରଚନା ହୋଇଛି ବୋଲି ବିଶ୍ୱାସ କରେ। ଏ ପ୍ରକୃତି ହେଉଛନ୍ତି ଶକ୍ତି, ପୁରୁଷ ହେଉଛନ୍ତି ଶିବ। ଶକ୍ତିହୀନ ଶିବ ଶବରୁପେ ପରିଗଣିତ ହୁଅନ୍ତି। ପ୍ରତ୍ୟକ ନାରୀଙ୍କ ଦେହରେ ପ୍ରକୃତିର ସତ୍ତା ସନ୍ନିହିତ। ଯାହାକୁ ଆମେ ପ୍ରକାରାନ୍ତରେ ଶକ୍ତି ବୋଲି କହିପାରିବା ଏହା ସ୍ୱତ୍ତ୍ୱେ ନାରୀକୁ ଦୁର୍ବଳ ବୋଲି ସମାଜ ଧରି ନେଇଛି। ଦୁର୍ଗା, ଲକ୍ଷ୍ମୀ, ସରସ୍ୱତୀଙ୍କୁ ଆମେ ଶକ୍ତି ରୂପେ ପୂଜା କଲେ ସୁଦ୍ଧା ନାରୀମାନଙ୍କୁ ଆମେ ଶକ୍ତି ହୀନା ବୋଲି କହୁ। ସେମାନଙ୍କୁ ଶକ୍ତିମୟୀ ପରିବର୍ତ୍ତେ ଅବଳା ବୋଲି ସମସ୍ତେ ଧରି ନିଅନ୍ତି। ନାରୀ ଶକ୍ତିକୁ ସମାଜରେ ସ୍ୱୀକୃତି ଦିଆଯାଏ ନାହିଁ। ଆବହମାନ କାଳରୁ ନାରୀକୁ ଶକ୍ତି ନୁହେଁ, କେବଳ ରତ୍ନ ରୂପରେ ହିଁ ଗ୍ରହଣ କରାଯାଇଛି। ପରିବାରରେ କନ୍ୟା ସନ୍ତାନଟିଏ ଜନ୍ମ ହେଲେ କୁହାଯାଏ କନ୍ୟା ରତ୍ନଟିଏ ଆସିଛି। ପୁରୁଷମାନଙ୍କୁ ପୁରୁଷ ପୁଙ୍ଗବ କୁହାଗଲା ବେଳେ ନାରୀମାନଙ୍କୁ ସହ 'ରତ୍ନ' ବିଶେଷଣ ଯୋଡ଼ି କୁହାଯାଏ 'ନାରୀରତ୍ନ'।

ସ୍ତ୍ରୀମାନଙ୍କ ତ ସମ୍ପତ୍ତି ରୂପେ ଗ୍ରହଣ କରିବା ଅତି ସାଧାରଣ କଥା। ଏ ସଂପର୍କରେ ସଂସ୍କୃତରେ ଗୋଟିଏ ଶ୍ଳୋକ ଅଛି। ଯାହାର ଓଡ଼ିଆ ଅନୁବାଦ ଏହିପରି ଗୋ, ଭୂମି, ସ୍ୱର୍ଣ୍ଣ ଓ ନାରୀ କେବଳ ଭାଗ୍ୟରେ ଥିଲେ ହିଁ ପ୍ରାପ୍ୟ ହୁଏ। ସ୍ୱର୍ଣ୍ଣଦାନ, ଭୂଦାନ, ଗୋଦାନ, ଅନ୍ନଦାନ ଭଳି କନ୍ୟାଦାନକୁ ମହତ୍ ପୁଣ୍ୟ କାର୍ଯ୍ୟ ରୂପେ ଧରାଯାଏ।

କୁରୁ ସଭାରେ ଧର୍ମରାଜ ଯୁଧିଷ୍ଠିର ପଶାଖେଳରେ ଦ୍ରୌପଦୀଙ୍କୁ ବାଜି ଲଗାଇବା ବେଳେ ସେ ତାଙ୍କୁ ନିଜର ସମ୍ପତ୍ତି ରୂପେ ଗ୍ରହଣ କରିନେଇଥିଲେ। ସ୍ତ୍ରୀ ଯେ ସ୍ୱାମୀର ସଂପତ୍ତି ନୁହେଁ, ଏ ସଂପର୍କୀୟ ଦ୍ରୌପଦୀଙ୍କର ଅନେକ ନୀତିଗତ ପ୍ରଶ୍ନକୁ ଯୁଧିଷ୍ଠିର ତଥା କୁରୁସଭାର ବୟୋଜ୍ୟେଷ୍ଠମାନେ ଏଡ଼େଇ ଦେଇଥିଲେ। ରତ୍ନ ବା ସମ୍ପତ୍ତିକୁ ନେଇ ବ୍ୟବସାୟ କଲାକରି ଇନ୍ଦ୍ର, ମେନକା, ଉର୍ବଶୀ ଓ ରମ୍ଭାଆଦି ଅପ୍ସରାମାନଙ୍କୁ ମଧ୍ୟ ଠିକ୍ ଆବଶ୍ୟକ ସ୍ଥଳେ ଋଷିମାନଙ୍କର ତପସ୍ୟା ଭଙ୍ଗ କରିବା ଉଦ୍ଦେଶ୍ୟରେ ଉପଯୋଗ କରିଥାନ୍ତି, ଏବଂ କାର୍ଯ୍ୟ ସାଧନ ହେଲାପରେ ପୁଣି ସେମାନଙ୍କୁ ଫେରେଇ ନେଇଥାନ୍ତି। ଆମର ପୌରାଣିକ ପରିକଳ୍ପନାରେ ନାରୀମାନଙ୍କ ଆବେଗ ଆକର୍ଷଣ ଓ ଭାବପ୍ରବଣତାକୁ ପ୍ରାଧାନ୍ୟ ଦିଆଯାଏ ନାହିଁ।

ନାରୀର ନିଜତ୍ୱକୁ କେବେ ଆମ ସମାଜ ପ୍ରାଧାନ୍ୟ ଦେଇନାହିଁ। ସ୍ୱାମୀ ସନ୍ତାନମାନଙ୍କର ସଫଳତା ପାଇଁ ନାରୀର ସେବା ତ୍ୟାଗ କର୍ମ କୁଶଳତାକୁ ଚାବିକାଠି ସଦୃଶ ମନେ କରାଯାଇଛି। ବ୍ୟକ୍ତିଗତ ସଫଳତା ପାଇଁ ପୁରୁଷଟିଏ ପରିବାର ଓ ପତ୍ନୀକୁ ଅବହେଳା କିମ୍ବା ପରିତ୍ୟାଗ କଲେ ତାହା ପୁରୁଷର ପୁରୁଷାର୍ଥ ବୋଲି ପରିଗଣିତ ହୁଏ। କିନ୍ତୁ ନାରୀଟି ଯଦି ବ୍ୟକ୍ତିଗତ ସଫଳତା ପାଇଁ ସ୍ୱାମୀ ଓ ସନ୍ତାନଙ୍କର ଏତେ ଟିକେ ବି ଅବହେଳା କରେ, ସମାଜ ତାକୁ କ୍ଷମା ଦିଏ ନାହିଁ। ସେ ସ୍ୱେଚ୍ଛା ଚାରିଣୀର ଆଖ୍ୟା ପାଏ।

ଆବହମାନ କାଳରୁ ନାରୀକୁ ସଂପତ୍ତି ବା ରତ୍ନ ବୋଲି ଗ୍ରହଣ କରି କବିମାନେ ତାର ରୂପ ବର୍ଣ୍ଣନାରେ ବହୁସାମାର୍ଥ୍ୟ ବ୍ୟୟ କରିଛନ୍ତି। ମଧ୍ୟଯୁଗତ ଏସବୁ ସୀମା ଲଙ୍ଘନ କରିଥିଲା। ନାରୀ ପାଇଁ ଅମର୍ଯ୍ୟାଦା ଜନକ ଶବ୍ଦ କାମିନୀ ଓ ରମଣୀ ଆଦି ଏହି କାଳର ସୃଷ୍ଟି। ଏ ସମୟ ସମାଜ ନାରୀକୁ ଅର୍ଥନୈତିକ ସ୍ୱାଧୀନତା ଦେବାପାଇଁ ଆଦୌ ପ୍ରସ୍ତୁତ ନ ଥିଲା। ଯାହା ଫଳରେ ଏକ ବିଶ୍ୱସ୍ତ ଦାସୀ ରୂପେ ସମାଜରେ ସେ ତାର ପରିଚୟ ପାଇଥିଲା। ଅମୂଲ୍ୟ ରତ୍ନକୁ ସାତ ସିନ୍ଧୁକରେ ରଖିଲା ଭଳି ତାକୁ ଚାରିକାନ୍ଥ ଭିତରେ ସୁନାପଞ୍ଜୁରୀରେ ରଖାଯାଉଥିଲା। କିନ୍ତୁ ପଞ୍ଜୁରୀତ ପଞ୍ଜୁରୀ। ସେ ସୁନା ହେଉ କି ଲୁହାହେଉ। କିନ୍ତୁ ସମୟର କଷଟି ପଥରରେ ସେ କଷି ହେଇ ପ୍ରମାଣିତ କରି ସାରିଲାଣି ଯେ ନାରୀ ରତ୍ନ ନୁହେଁ ସେ

ଶକ୍ତିର ଉତ୍ସ। କେବଳ ଅଳଙ୍କାର ହୋଇ ଅନ୍ୟର ଶୋଭା ବର୍ଦ୍ଧନ କରିବା ପାଇଁ ଭଗବାନ ତାକୁ ଜନ୍ମ ଦେଇ ନାହାନ୍ତି। ଏହା ସେ ଉପଲବ୍ଧ କରି ସାରିଲାଣି। ଯୁଗ ଯୁଗ ଧରି ତାର ଅବଦମିତ ଶକ୍ତି ସତେ ଯେମିତି ଏକ ବିଂଶ ଶତାବ୍ଦୀରେ ଆତ୍ମପ୍ରକାଶ ଲୋଡ଼ୁଛି। ଏସବୁ ସତ୍ତ୍ୱେ ଅନେକ କ୍ଷେତ୍ରରେ ପରିଲକ୍ଷିତ ହେଉଛି, ଦୀର୍ଘଦିନ ଧରି ନାରୀ ଏକ ଆନୁଗତ୍ୟର ଜୀବନ ବିତାଇ ଥିବାରୁ ତଥାପି ସେ ତାର ସ୍ୱାଧିକାର ସଂପର୍କରେ ସଂପୂର୍ଣ୍ଣ ସଚେତନ ନୁହେଁ। ପ୍ରତ୍ୟେକ ମନୁଷ୍ୟ, ସେ ପୁରୁଷ ହେଉ କି ସ୍ତ୍ରୀ, ତାର ସର୍ବାଙ୍ଗୀନ ଉନ୍ନତି ପାଇଁ ଅନୁକୂଳ ପରିସର ସୃଷ୍ଟି କରବା ସମାଜର ସଂପୂର୍ଣ୍ଣ ଦାୟିତ୍ୱ। ଅନ୍ୟଥା ତାର ସ୍ୱାଧିକାର ଉପରେ ଆଞ୍ଚ ଆସିଲା ବୋଲି ବୁଝିବାକୁ ହେବ।

ବେଳେ ବେଳେ ନାରୀ ତାର ଅଧିକାର ସଂପର୍କରେ ସଚେତନ ନଥିବାରୁ ଶାଶୁଘର କିମ୍ବା ବାପଘର କେଉଁଠି ସେ ମର୍ଯ୍ୟାଦାର ସହ ରହିପାରେ ନାହିଁ। ଏକ ଅନୁଗୃହୀତାର ଜୀବନ ବିତାଇବାକୁ ସେ ବାଧ୍ୟ ହୁଏ। ଆମ ସମାଜରେ ନାରୀର ସ୍ଥିତି ଏପରି ଦୟନୀୟ ହୋଇ ପଡ଼ିଛି ଯେ ଆଇନ ତାକୁ ନ୍ୟାୟ ପ୍ରଦାନ କଲେ ସୁଦ୍ଧା ସମାଜ ତାକୁ ସୁରକ୍ଷା ଦିଏ ନାହିଁ। ଧର୍ଷଣ ମାମଲାରେ ନିର୍ଦ୍ଦୋଷ ସାବ୍ୟସ୍ତ ହୋଇଥିବା ମହିଳାଟିଏ ସମାଜ ଆଖିରେ ପତିତା ହୁଏ। ପିତ୍ରାଳୟ ଓ ପତିଗୃହ ଉଭୟ ରାସ୍ତା ତା ପାଇଁ ବନ୍ଦ ହୋଇଯାଏ। ସେ ପତିତା ଆଶ୍ରମ କିମ୍ବା ଅସହାୟ ମହିଳାଙ୍କ ଥଇଥାନ ପାଇଁ ବ୍ୟବସ୍ଥା ହୋଇଥିବା ଆଶ୍ରମମାନଙ୍କରେ ସ୍ଥାନ ପାଏ। ଯୌତୁକ ନିର୍ଯ୍ୟତନା କିମ୍ବା ଅନ୍ୟାନ୍ୟ କାରଣରୁ ନିର୍ଯାତିନା ହୋଇଥିବା ବଧୂଟିଏ ନ୍ୟାୟାଳୟରୁ ନ୍ୟାୟ ପାଇ ସ୍ୱାମୀଗୃହରେ ରହିବାର ଅଧିକାର ପାଇଲେ ମଧ୍ୟ ସେଠି ସେ ସମସ୍ତଙ୍କର ଚକ୍ଷୁଶୂଳ ହୋଇ ବଞ୍ଚେ। ପିତ୍ରାଳୟରେ ସୁଦ୍ଧା ସେହି ସମସ୍ୟା। ବହୁତ କମ୍ ପିତାମାତା ଓ ଭାଇ ଅଛନ୍ତି ଯେଉଁମାନେ ସ୍ୱତଃପ୍ରବୃତ୍ତ ହୋଇ କନ୍ୟାକୁ ତାର ପୈତୃକ ସମ୍ପତ୍ତି ପ୍ରଦାନ କରିଥାନ୍ତି। ଝିଅଟି ଯଦି ନିଜ ତରଫରୁ ପଦକ୍ଷେପ ନେଇ ପୈତୃକ ସମ୍ପତ୍ତିରେ ଦାବୀ ଜଣାଇଲା ଆଇନ୍ ତାକୁ ତାହା ଦିଏ ସତ, କିନ୍ତୁ ପରିମାଣରେ ପିତାମାତା ଓ ଭାଇମାନଙ୍କଠାରୁ ତାର ସମସ୍ତ ସଂପର୍କ ଛିନ୍ନ ହୁଏ।

ଏସବୁ ପର୍ଯ୍ୟାଲୋଚନା କଲେ ନାରୀର ସ୍ଥିତି ସମାଜରେ କେତେ ଶୋଚନୀୟ ତାହା ସହଜରେ ଅନୁମେୟ। ଯେ ପର୍ଯ୍ୟନ୍ତ ନାରୀ ଅର୍ଥନୈତିକ ସ୍ୱାଧୀନତା ନ ପାଇଛି ନିଜେ ଉତ୍ପାଦନଶୀଳ ନ ହୋଇଛି, ତାର ଦୁଃଖ, ଦୁର୍ଦ୍ଦଶା, ଦୂରହେବା ଆଦୌ ସହଜ ନୁହେଁ। ନାରୀରତ୍ନ ନୁହେଁ, ଅନ୍ୟର ଅଧିକୃତ ସମ୍ପତ୍ତି ନୁହେଁ, ତାର ନିଜସ୍ୱ ପରିଚୟ ଅଛି। ନିଜର ସ୍ଥିତି ସୁଦୃଢ଼ କରିବା ପାଇଁ ତା ପାଖରେ ଶକ୍ତି

ରହିଛି। କିନ୍ତୁ ଯୁଗ ଯୁଗ ଧରି ଚଳି ଆସୁଥିବ ଆମର ସାମାଜିକ ବିଧିବିଧାନ, କୁସଂସ୍କାର ଅନ୍ଧବିଶ୍ୱାସ ତାକୁ ପଙ୍ଗୁ କରି ଦେଇଛି। ଆବଶ୍ୟକୀୟ ଶିକ୍ଷା ଓ ସେହିଶିକ୍ଷାକୁ ବିନିଯୋଗ କରି କିଛି ଉପାର୍ଜନ କ୍ଷମତା ହାସଲ କଲେ ନାରୀ ତାର ସକଳ ଦୁଃଖ ଦୁର୍ଦ୍ଦଶା ଦୂରୀଭୂତ କରିପାରିବ। ଅର୍ଥନୈତିକ ସ୍ୱାଧୀନତା ବିନା ଅନ୍ୟ ସକଳ ସ୍ୱାଧୀନତା ଅର୍ଥହୀନ। ନ୍ୟାୟାଳୟର ଆଇନକାନୁନ ସଦା ସର୍ବଦା ନାରୀକୁ ସୁରକ୍ଷା ଦେଇପାରିବ ନାହିଁ। ଯେତେଦିନ ପର୍ଯ୍ୟନ୍ତ ନାରୀ ତାର ସୁପ୍ତ ଶକ୍ତିକୁ ଜାଗ୍ରତ ନ କରିଛି, ନିଜର ଦୃଢ଼ ଆତ୍ମ ବିଶ୍ୱାସ ଫେରି ନ ପାଇଛି, ସମାଜରେ ନିଜକୁ ଅପାଙ୍କ୍ତେୟ ବୋଲି ନ ଭାବି ନିଜର ଅଧିକାର ନିଜେ ସାବ୍ୟସ୍ତ ନ କରିଛି, ସେତେଦିନ ପର୍ଯ୍ୟନ୍ତ ଏ ସମାଜ ତାକୁ ରତ୍ନ ବୋଲି ଆଦର କରୁଥିବ ସିନା କିନ୍ତୁ ଶକ୍ତି ବୋଲି ସମ୍ମାନ ଦେବ ନାହିଁ।

ସର୍ବୋଦୟ

୧୫ ଜୁଲାଇ ୨୦୦୪

# ନାରୀ ପାଇଁ ସାମାଜିକ ସୁରକ୍ଷା ଓ ବିବାହ

ସୃଷ୍ଟି ପ୍ରକ୍ରିୟାକୁ ତ୍ୱରାନ୍ୱିତ କରିବା ପାଇଁ ପୁରୁଷ ଓ ସ୍ତ୍ରୀ ଉଭୟଙ୍କର ଯୋଗଦାନ ସମପରିମାଣରେ ସ୍ୱୀକୃତ ହେଲେ ସୁଦ୍ଧା ପୁରୁଷଦମିତ ସମାଜରେ ନାରୀର ସ୍ଥିତି ଅପେକ୍ଷାକୃତ ଦୁର୍ବଳ। ବୈଦିକ ଯୁଗରୁ ଆରମ୍ଭ କରି ସାଂପ୍ରତିକ ଯୁଗ ପର୍ଯ୍ୟନ୍ତ ନାରୀକୁ ଶ୍ରେଷ୍ଠ ସ୍ଥାନ ଦିଆଯିବାର ପ୍ରଚେଷ୍ଟା ଭିତରେ ତା'ର ଅସହାୟତା ହିଁ ସ୍ପଷ୍ଟ ହୋଇଉଠେ। ସତୀ ଅନସୂୟା କୁଷ୍ଠ ରୋଗଗ୍ରସ୍ତ ସ୍ୱାମୀର ସକଳ ଅନୁଚିତ ଅଭିଳାଷକୁ ଚରିତାର୍ଥ କରିବା ପାଇଁ ଗଣିକା ଲକ୍ଷହୀରାର ଦାସୀ ହେବା ପାଇଁ ସୁଦ୍ଧା ଦ୍ୱିଧା ପ୍ରକାଶ କରିନାହାଁନ୍ତି; ଅଥଚ ଶରୀରରେ ସାମାନ୍ୟ ଧବଳ ଛଉ ଥିବା ହେତୁ ବୈଦିକ ଯୁଗର ବିଦୂଷୀ ଅପାଲା ସ୍ୱାମୀ ପରିତ୍ୟକ୍ତା ହୋଇପଡ଼ିଛନ୍ତି। ତା'ପରେ ନିଜ ଚେଷ୍ଟାରେ ବହୁ ଶାସ୍ତ୍ର ଅଧ୍ୟୟନ କରି ସେହି ପରିତ୍ୟକ୍ତା ଅବସ୍ଥାରେ ହିଁ ନିଜର ସ୍ଥିତି ସୁଦୃଢ଼ କରି ପାରିଛନ୍ତି। ଅଯୋଧ୍ୟାର ରାଜରାଣୀ ବୋଲି ସମ୍ମାନିତା ହେଉଥିବା ସତୀ ସାଧ୍ୱୀ ସୀତାଙ୍କର ଅସହାୟତା ତ ସବୁ ସୀମା ଅତିକ୍ରମ କରିଯାଇଛି। ଦୁରାତ୍ମା ରାବଣ ତାଙ୍କୁ ଅପହରଣ କରିନେଇଥିଲା, ମହାତ୍ମା ରାମଚନ୍ଦ୍ର କିନ୍ତୁ ତାଙ୍କୁ ଆଜୀବନ ନିର୍ବାସନ ଦଣ୍ଡ ଦେଇଥିଲେ। ତେଜମୟୀ, ଅସାଧାରଣ ବ୍ୟକ୍ତିତ୍ୱର ଅଧିକାରିଣୀ ପାଣ୍ଡବପତ୍ନୀ ଦ୍ରୌପଦୀଙ୍କୁ ବିବସ୍ତ୍ର କରିବାର ଘୃଣ୍ୟ ପ୍ରଚେଷ୍ଟା ଇତିହାସର ଏକ କଳଙ୍କିତ ଅଧ୍ୟାୟ। ରାଜରାଣୀ ସୀତା ଓ ଦ୍ରୌପଦୀଙ୍କ ଭଳି ମହିୟସୀ ମହିଳାମାନଙ୍କୁ ସୁରକ୍ଷା ଦେବାରେ ଯଦି ତତ୍କାଳୀନ ସମାଜ ଅସମର୍ଥ ଥିଲା ତାହେଲେ ସାଧାରଣ ନାରୀମାନଙ୍କ ଦୁର୍ଦ୍ଦଶାର ହିସାବ ବା କିଏ ରଖୁଛି ?

ଐତିହାସିକ ଯୁଗରେ ମଧ୍ୟ ସେହି ଅଧ୍ୟାୟର ପୁନରାବୃତ୍ତି। ପତି ବଞ୍ଚିଥିବା ଅବସ୍ଥାରେ ପତ୍ନୀର ମୃତ୍ୟୁ ହେଲେ,, ଜୁଇ ଶୀତଳ ହେବା ପୂର୍ବରୁ ପତି ଯଦି ୨ୟ ପତ୍ନୀ ଗ୍ରହଣ କରୁଥିଲା, ସମାଜ ପ୍ରତିବନ୍ଧକ ସୃଷ୍ଟି କରୁନଥିଲା। କିନ୍ତୁ ପତ୍ନୀ ଜୀବିତାବସ୍ଥାରେ ଯଦି ପତି ପ୍ରାଣହରାଏ, ବିଚାରି ପତ୍ନୀଟିର ବଞ୍ଚିବାର ଅଧିକାର ସୁଦ୍ଧା ତାଠାରୁ ଛଡ଼େଇ ନିଆହେଉଥିଲା। ସ୍ୱାମୀର ଚିତାରେ ହୁଏତ ତାକୁ ଆତ୍ମାହୁତି ଦେବାକୁ ପଡୁଥିଲା। ନଚେତ୍ ସମାଜର ନାନା ନୀତିନିୟମ ଓ କାଇଦା କଟକଣାର

ନିଆଁରେ ଜୀବନସାରା ଜଳିପୋଡ଼ି ମରୁଥିଲା ଓ ଆସନ୍ତା ଜନ୍ମରେ ପୁଣି ସେଇ ସ୍ୱାମୀ ସହ ମିଳିତ ହେବାପାଇଁ କଠିନ ବ୍ରତ ଉପବାସ କରୁଥିଲା । ଏ ସବୁ ଅନୁଧ୍ୟାନ କଲେ ନାରୀ ଯେ ଯୁଗେ ଯୁଗେ ଅସୁରକ୍ଷିତ ଥିଲା ଓ ପୁରୁଷ ନିୟନ୍ତ୍ରିତ ସମାଜରେ ପୁରୁଷର ଦୟା ଓ ଅନୁକମ୍ପା ଦ୍ୱାରା ତିଷ୍ଠି ରହିଆସିଥିଲା, ତାହା ସହଜରେ ଉପଲବ୍ଧି ହୁଏ ।

ସେଇ ଚିରାଚରିତ ପ୍ରଶ୍ନ ସାଂପ୍ରତିକ ସମାଜରେ ଅତି ଉତ୍କଟ ହୋଇ ଦେଖାଦେଇଛି । କାରଣ ପରିବର୍ତ୍ତିତ ସମାଜରେ ନାରୀ ଭିତରେ ଆଜି ନିଜର ବ୍ୟକ୍ତିତ୍ୱକୁ ଜାହିର କରିବାର ଶକ୍ତି ଆସିଛି । ସେ ଆତ୍ମସଚେତନ ହୋଇଛି । ତା'ର କର୍ମକ୍ଷେତ୍ର ରୋଷେଇଶାଳରୁ ରାଜଦାଣ୍ଡ ପର୍ଯ୍ୟନ୍ତ ଲମ୍ବିଯାଇଛି । ପ୍ରଶ୍ନ ଉଠେ ଯୁଗଯୁଗ ଧରି ପୁରୁଷର ଲୋଲୁପ ଦୃଷ୍ଟିର ଶିକାର ହେଉଥିବା ନାରୀଟି ଯେତେବେଳେ ଏରୁଣ୍ଡି ଡେଇଁ ବାହାରକୁ ଆସୁଛି ସେତେବେଳେ ସେ କେତେ ନିରାପଦ । ଆଉ ବିବାହ ତାକୁ କେତେ ନିରାପତ୍ତା ପ୍ରଦାନ କରୁଛି ଏବଂ ବିବାହିତା ନାରୀଟିଏ ପ୍ରକୃତରେ ସୁରକ୍ଷିତ କି ? ଏ ପ୍ରଶ୍ନର ସହଜ ସମାଧାନ ପାଇଁ ଆମେ ନାରୀମାନଙ୍କୁ ୪ ଭାଗରେ ବିଭକ୍ତ କରିବା ।

(୧) ଆଜୀବନ ବିବାହିତା ମହିଳା

(୨) ବିଧବା ଓ ପତି ପରିତ୍ୟକ୍ତା ମହିଳା

(୩) ବିବାହ ପୂର୍ବରୁ ସମାଜର ବିଭିନ୍ନ କର୍ମକ୍ଷେତ୍ରରେ କାର୍ଯ୍ୟରତ ଥିବାମହିଳା

(୪) ବିବାହିତା ମହିଳା

ଅଧିକାଂଶ କନ୍ୟା ଯେଉଁ କାରଣ ହେତୁ ଅବିବାହିତ ରହିଯାଇଛନ୍ତି, ସେଗୁଡ଼ିକ ହେଲା କନ୍ୟାଟିର ଅଭିଭାବକମାନେ ଯଦି ଠିକ୍ ସମୟରେ ବରପାତ୍ର ଯୋଗାଡ଼ କରିବାର ଉଦ୍ୟମ ନ କରନ୍ତି, କନ୍ୟାଟି ଶାରୀରିକ ବିକଳାଙ୍ଗ କିମ୍ବା କୌଣସି ଦୁରାରୋଗ୍ୟ ବ୍ୟାଧିର ଶିକାର ହୋଇଥାଏ, ଆର୍ଥିକ ଦୃଷ୍ଟିରୁ ପରିବାର ଦାୟିତ୍ୱ ଯଦି ଝିଅଟି ମୁଣ୍ଡକୁ ନେଇଥାଏ, କୌଣସି ପ୍ରେମ ବ୍ୟାପାରରେ ଝିଅଟି ଯଦି ପୁରୁଷ ସମାଜ ପ୍ରତି ବୀତସ୍ପୃହ ହୋଇପଡ଼ିଥାଏ ଇତ୍ୟାଦି । ଉପରୋକ୍ତ କାରଣ ବିନା ଯଦି ଝିଅଟି ଅବିବାହିତ ରହୁଛି, ତା'ହେଲେ ତାହା ତା'ର ସ୍ୱାଧୀନ ଭାବରେ ରହିବାରର ବ୍ୟକ୍ତିଗତ ନିଷ୍ପତ୍ତି । କିନ୍ତୁ ଏହାର ଉଦାହରଣ କ୍ୱଚିତ ପରିଲକ୍ଷିତ ହୁଏ । କାରଣ ଯାହା ହେଉନା କାହିଁକି ନାରୀଟିଏ ଯଦି ଅବିବାହିତ ରହୁଛି ସମାଜ ତାକୁ ସହଜ ଦୃଷ୍ଟିରେ ଦେଖୁନାହିଁ । ଆମ ସାମାଜିକ ବିଧି ବ୍ୟବସ୍ଥାରେ ସେ ଅନେକ

ବ୍ୟଙ୍ଗ ବିଦ୍ରୂପର ଶିକାର ହେଉଛି। ନାରୀଟି ଯଦି କର୍ମଜୀବୀ ତା ହେଲେ ସେ କର୍ମ ନିଷ୍ଠାପୂର୍ବକ ଏସବୁ ପ୍ରତି କମ୍ ଦୃଷ୍ଟି ଦିଏ। ପିତାମାତାଙ୍କ ପରେ ଭାଇ ଭାଉଜଙ୍କ ସଂସାରରେ ଯେହେତୁ ସେ ଉପଯୁକ୍ତ ଆଦର ପାଏନାହିଁ, ସେ ପରିବାରରୁ ଅଲଗା ହୋଇ ସ୍ୱତନ୍ତ୍ର ଭାବରେ ରହିବାକୁ ଉପଯୁକ୍ତ ମନେକରେ। ଅନେକ ସମୟରେ ତା'ର ଆତ୍ମୀୟସ୍ୱଜନ ତା'ର ଅର୍ଜିତ ଧନ ଉପରେ ଲୋଲୁପ ଦୃଷ୍ଟି ପକାନ୍ତି। ଏହାଛଡା ବିବାହିତ ପୁରୁଷମାନେ ମଧ୍ୟ ତା' ସହ ପ୍ରେମାଭିନୟ କରି ତାକୁ ବିବାହ ପାଇଁ ପ୍ରଲୁବ୍ଧ କରନ୍ତି। ଏ କ୍ଷେତ୍ରରେ ଅନେକ ଦୁର୍ବଳମନା ନାରୀ ସାମାଜିକ ନିରାପତା ପାଇଁ ବ୍ୟକ୍ତିଟିର ଦ୍ୱିତୀୟ ପତ୍ନୀ ହୋଇସାରିବା ପରେ ବହୁତ ପଶ୍ଚାତ୍ତାପ କରନ୍ତି। ଶାରିରୀକ ବିକଳାଙ୍ଗ ନାରୀମାନଙ୍କ କ୍ଷେତ୍ରରେ ଯଦି ପିତାମାତା ଜୀବିତାବସ୍ଥାରେ ତା' ପାଇଁ କଛି ଆର୍ଥିକ ବ୍ୟବସ୍ଥା ନକରିଥାନ୍ତି, ସେମାନଙ୍କ ମୃତ୍ୟୁ ପରେ ମହିଳାଟିର ଜୀବନ ନର୍କଠୁ ବି ଯନ୍ତ୍ରଣାଦାୟକ ହୋଇଯାଏ। କୌଣସି କର୍ମକ୍ଷେତ୍ରରେ ନିଯୁକ୍ତି ହୋଇନଥିବା ଅବିବାହିତା ମହିଳା ମଧ୍ୟ ଭାଇ ଭାଉଜ, ପୁତୁରା ଝିଆରିଙ୍କ ସଂସାରରେ ଏହିଭଳି ଗଭୀର ମାନସିକ ଅଶାନ୍ତି ନେଇ ପଡିରହନ୍ତି। ମନସ୍ତାତ୍ତ୍ୱିକ ଦୃଷ୍ଟିକୋଣରୁ ଲକ୍ଷ୍ୟ କରାଯାଇଛି ଯେହେତୁ ସେମାନେ ଦାମ୍ପତ୍ୟ ଜୀବନର ସକଳ ସୁଖଶାନ୍ତିରୁ ବଂଚିତ, ପରିବାରରେ ଅନ୍ୟମାଦଙ୍କର ସୁଖଶାନ୍ତିକୁ ସେମାନେ ସହଜ ଦୃଷ୍ଟିରେ ଗ୍ରହଣ କରିପାରନ୍ତି ନାହିଁ। ପରିବାରରେ ଅଶାନ୍ତି ଲାଗିରହେ। ବିଧବା ଓ ପରିତ୍ୟକ୍ତା ମହିଳାମାନେ ଆତ୍ମୀୟସ୍ୱଜନଙ୍କ ଅତ୍ୟଧିକ ସ୍ନେହ, ସହାନୁଭୂତି, ଅନୁକମ୍ପା ହାସଲକରି ମାନସିକ ସ୍ତରରେ ସ୍ଥାଣୁ ପାଲଟି ଯାଆନ୍ତି; କିନ୍ତୁ ଏହି ଅନୁକମ୍ପା ବେଶିଦିନ ତିଷ୍ଠି ରହିପାରେ ନାହିଁ। ଧିରେ ଧିରେ ପରିବାରରେ ଏମନଙ୍କୁ ବୋଝ ବୋଲି ଗ୍ରହଣ କରାଯାଏ। ଯେ ପର୍ଯ୍ୟନ୍ତ ମହିଳାଟି ଆତ୍ମନିର୍ଭଶୀଳ ହୋଇନାହିଁ, ତାକୁ ବହୁ ମାନସିକ ନିର୍ଯାତନା ସହ୍ୟ କରିବାକୁ ପଡେ। ଅତ୍ମନିର୍ଭରଶୀଳ ହେଲା ପରେ ସୁଦ୍ଧା ସ୍ୱାମୀରୂପକ ରକ୍ଷା କବଚ ଯେହେତୁ ତା'ର ନାହିଁ, ବହୁ ଅସାମାଜିକ ବ୍ୟକ୍ତି ନାନା ଉପାୟରେ ତାକୁ ନିର୍ଯାତନା ଦିଅନ୍ତି।

ଏସବୁ ପର୍ଯ୍ୟାଂଲେଚନା କଲେ ଜଣାଯାଏ ବିବାହ କେବଳ ସୁରକ୍ଷା ଦୃଷ୍ଟିରୁ ଅପରିହାର୍ଯ୍ୟ ନୁହେଁ, ବିବାହ ଯେହେତୁ ଏକ ପବିତ୍ର ଅନୁଷ୍ଠାନ, ସମାଜକୁ ଶୃଙ୍ଖଳିତ କରିବାର ଏକ ଉତ୍କୃଷ୍ଟ ମାଧ୍ୟମ, ସର୍ବସ୍ୱୀକୃତିକ୍ରମେ ବିବାହକୁ ଏକ ବିଶିଷ୍ଟ ଅଙ୍ଗରୂପେ ଗ୍ରହଣ କରାଯଇଛି। ତଥାପି ଅଧିକାଂଶ କ୍ଷେତ୍ରରେ ବିବାହିତା ନାରୀ ପାଇଁ ସୁରକ୍ଷା କବଚ ବଦଳରେ ମୃତ୍ୟୁର ବଳୟ ପାଲଟିଯାଇଛି। ବିବାହ ପରେ ଝିଅଟିର ଯଦି ସ୍ୱାମୀ, ଶ୍ୱଶୁର, ଶାଶୁ, ନଣନ୍ଦଙ୍କ ସହ ଉତ୍ତମ ବୁଝାମଣା ନ ରହିଲା ତା ଜୀବନ

ଦୁର୍ବିସହ ହୋଇପଡେ। ଆପଣାର ଭାବି ପାଦଦେଇଥିବା ସଂସାରଟି ତା ପାଇଁ ସାତପର ହୋଇଯାଏ। ତା ସାଙ୍ଗକୁ ଯଦି ଯୌତୁକ ଯାତନା ରହିଛି ତ କଥାସରିଲା। ଆଖି ଲୁହ ପାପୁଲିରେ ପୋଛି ପୋଛି ଦିନ ସରେନାହିଁ। ଅତ୍ୟଧିକ ମାନସିକ ଓ ଶାରିରୀକ ଯନ୍ତ୍ରଣା ସହିନପାରି ବୋହୂଟି କେଉଁଠି ଆତ୍ମହତ୍ୟା କଲାଣି ତ କେଉଁଠି ବୋହୂଟିକୁ ଜାଳିପୋଡି ଦିଆଗଲାଣି। ଶାଶୁଘର ନିର୍ଯ୍ୟାତିତା ହୋଇ ଝିଅଟି ବାପଘରକୁ ଫେରି ଆସିଲେ ବାପାମାଆଙ୍କ ମୁଣ୍ଡରେ ଚଡ଼କ ପଡ଼ିଯାଏ। ସାମାଜିକ ମାନ ସମ୍ମାନ ଓ ଝିଅଟିର ସୁଖୀ ଦାମ୍ପତ୍ୟ ଜୀବନ ଆଶାରେ ସେମାନେ ମାଡ଼ିମକଚି ରହିଯାଆନ୍ତି। ଝିଅଟି ଯେତେ ନିର୍ଯ୍ୟାତିତା ହେଲେ ସୁଦ୍ଧା ସେଇ ଶାଶୂଘର ତା ପାଇଁ ସ୍ୱର୍ଗ ବୋଲି ଧାରଣା ଦେଇ ଗଭୀର ଅନ୍ତର୍ଦାହ ସତ୍ତ୍ୱେ କଂସେଇ ପାଖରେ ବଳି ବକରା ଛାଡ଼ିଦେଲା ଭଳି ତାକୁ ନେଇ ଅଭିଭାବକମାନେ ପୁଣି ଶାଶୂଘରେ ଛାଡ଼ି ଆସନ୍ତି। ବିଚାରୀ ନିରୀହ ଝିଅଟି ପୁଣି ନିର୍ଯ୍ୟାତନା ସହିବା ପାଇଁ ମାନସିକ ପ୍ରସ୍ତୁତି ଆରମ୍ଭ କରିଦିଏ। ବହୁତ କମ୍ ଅଭିଭାବକ ଏ କ୍ଷେତ୍ରରେ ପୁଲିସର ସହାୟତା ନିଅନ୍ତି। କାରଣ ଆମ ସମାଜ ପତିପରିତ୍ୟକ୍ତା ଅପେକ୍ଷା ସବୁ ଦୁଃଖ ଯନ୍ତ୍ରଣା ନିର୍ଯ୍ୟାତନା ସହି ଶାଶୂଘରେ ମୁହଁମାଡ଼ି ପଡ଼ିଥିବା ଝିଅଟିକୁ ହିଁ ଅଧିକ ମାନ୍ୟତା ଦିଏ। ଅନେକ କ୍ଷେତ୍ରରେ ମଦ୍ୟପ ସ୍ୱାମୀ ସ୍ତ୍ରୀର ରୋଜଗାର ଟଙ୍କା ମଦ୍ୟପାନରେ ଉଡ଼ାଇଥାଏ। ସ୍ତ୍ରୀଟି ବିଚାରି ସାମାଜିକ ସମ୍ମାନ ଦୃଷ୍ଟିରୁ ସବୁ ମାଡ଼ଗାଳି ସହି ଶୁଖିଲା ମୁହଁରେ ହସ ଫୁଟେଇ କର୍ମକ୍ଷେତ୍ରକୁ ଯାଏ। ସ୍ତ୍ରୀଟିର ଶିକ୍ଷାଦୀକ୍ଷା ନଥିଲେ କୁଲିକାମ କିମ୍ବା ପର ଘରେ ବାସନମାଜି ମଦ୍ୟପ ସ୍ୱାମୀର ତୃଷ୍ଣା ମେଣ୍ଟାଇବା ସଙ୍ଗେ ସଙ୍ଗେ ପିଲାଛୁଆଙ୍କ ଦାୟିତ୍ୱ ନେଇଥାଏ। ତେଣୁ ବିବାହ ଯେ ନାରୀର ସୁରକ୍ଷା କବଚ ଏହା ସର୍ବଦା ସତ୍ୟ ନୁହେଁ। ବିବାହ ଏକ ସାମାଜିକ ଅନୁଷ୍ଠାନ ସମସ୍ତେ ଏ ଅନୁଷ୍ଠାନର ସଦସ୍ୟ ହେବାକୁ ଯେ ବାଧ୍ୟ ସେମିତି କିଛି ଧରାବନ୍ଧା ନିୟମ ନାହିଁ। ତଥାପି ପୁରୁଷ ଓ ମହିଳା ଉଭୟଙ୍କ ପାଇଁ ବିବାହ ସ୍ୱାଗତଯୋଗ୍ୟ।

ସମାଜ

୨୪, ଅପ୍ରେଲ, ୨୦୦୩

# ଯୁବମାନସ - ଜଡ଼ତା ଓ ଜାଗୃତି

ଶୈଶବ, କୈଶୋର, ଯୌବନ ଓ ଜରା - ଏ ଚାରୋଟି ପ୍ରାଣୀର ସ୍ୱାଭାବିକ ଅବସ୍ଥା। ପ୍ରକୃତିର ବିଚିତ୍ର ବିଧି ବିଧାନରେ କୌଣସି ପ୍ରାଣୀ ଏହାର ପ୍ରଭାବରୁ ମୁକ୍ତ ନୁହେଁ। ପ୍ରତ୍ୟେକ ସ୍ତର ତା ପାଇଁ ମହତ୍ତ୍ୱପୂର୍ଣ୍ଣ ବୋଧ ହେଲେ ସୁଦ୍ଧା ଯୁବା ଅବସ୍ଥା ସମସ୍ତଙ୍କ ପାଇଁ ଅଧିକ ତାତ୍ପର୍ଯ୍ୟପୂର୍ଣ୍ଣ। ଏହି ଯୌବନର ପ୍ରଭାବକୁ ଶରୀରରେ ଚିରସ୍ଥାୟୀ କରି ରଖିବା ପାଇଁ ସମସ୍ତେ ବିକଳ ପ୍ରୟାସ କରି ଆସିଛନ୍ତି। ପ୍ରାଚୀନ କାଳରେ ରାଜା ଯଯାତି ଶୁକ୍ରାଚାର୍ଯ୍ୟଙ୍କ ଦ୍ୱାରା ଶାପଗ୍ରସ୍ତ ହୋଇ ଅକାଳ ବାର୍ଦ୍ଧକ୍ୟ ପ୍ରାପ୍ତ ହୋଇଥିଲେ। ଏଥିରୁ ମୁକ୍ତ ହୋଇ ଯୌବନକୁ ଅନୁଭବ କରିବାପାଇଁ ନିଜ ପୁତ୍ରଠାରୁ ସୁଦ୍ଧା ଯୌବନ ଗ୍ରହଣ କରିବାକୁ କୁଣ୍ଠାବୋଧ କରି ନଥିଲେ। ଶୃଙ୍ଗାର ଶତକ ଲେଖୁଥିବା କବି ଭର୍ତ୍ତୃହରିଙ୍କ ଯୌବନକୁ ଚିରସ୍ଥାୟୀ କରୁଥିଲା ଅମୃତଫଳ ପାଇଲାପରି କିପରି ଜୀବନର ଗତିପଥ ବଦଳିଯାଇଛି ଓ ଶୃଙ୍ଗାର ଶତକ ପରିବର୍ତ୍ତେ ସେ ବୈରାଗ୍ୟ ଶତକ ଲେଖିଛନ୍ତି, ତାହା ଇତିହାସର ଏକ ଅନବଦ୍ୟ ଅଧ୍ୟାୟ। ସାମ୍ପ୍ରତିକ କାଳରେ ସୁଦ୍ଧା ବିଜ୍ଞାନର ଚରମ ଲକ୍ଷ୍ୟ ହୋଇଛି ଯୌବନକୁ ଧରି ରଖିବାର ପ୍ରୟାସ। ସେଥିପାଇଁ ବୈଜ୍ଞାନିକମାନେ ବିଭିନ୍ନ ପରୀକ୍ଷା ନିରୀକ୍ଷା ଚଳେଇଛନ୍ତି।

ଯୁବାବସ୍ଥା ମଣିଷର ପରିପୂର୍ଣ୍ଣ ବ୍ୟକ୍ତିତ୍ୱକୁ ଏକ ନିର୍ଦ୍ଦିଷ୍ଟ ରୂପଦେବା ପାଇଁ ବ୍ୟାକୁଳ ହୋଇଉଠେ। ଏହି ଦିଗହରା ବୋଇତ ଭଳି ଯୁବକମାନେ ଲକ୍ଷ୍ୟ ଓ ଆଦର୍ଶ ପାଇଁ ଖୋଜି ବୁଲନ୍ତି। ନିକମା ହୋଇ ସେମାନେ ବସିପାରନ୍ତି ନାହିଁ। ଆଳସ୍ୟ ତାଙ୍କର ସୀମା ସ୍ପର୍ଶ କରିନାହିଁ। ଭାଙ୍ଗିବା ଗଢ଼ିବା ସବୁ ସେମାନଙ୍କ ପାଇଁ ଏକା କଥା ହୋଇପଡ଼େ। ତାଙ୍କ ଦେହରେ ଯେଉଁ ଅମାପ ଶକ୍ତି ସୃଷ୍ଟି ହୁଏ, ସେ ଶକ୍ତି ତାଙ୍କୁ ଅତିଷ୍ଠ କରେ, କିଛି ଗୋଟିଏ କରିବାପାଇଁ। ଏହି ଘଡ଼ିସନ୍ଧି ମୁହୂର୍ତ୍ତରେ ତାଙ୍କୁ ଯଦି ଉପଯୁକ୍ତ ପଥପ୍ରଦର୍ଶନ ମିଳିଯାଆନ୍ତି, ତା ହେଲେ ସେମାନଙ୍କ ସୃଜନା ଶକ୍ତି ସମାଜର କଲ୍ୟାଣକାରୀ ଦିଗରେ ବିନିଯୋଗ ହୁଏ। ଅପରପକ୍ଷେ ଏ ଶକ୍ତି ଯଦି ପଥଭ୍ରଷ୍ଟ ହୁଏ, ସମାଜପାଇଁ ଏହା ଅତ୍ୟନ୍ତ ମାରାତ୍ମକ ହୋଇପଡ଼େ।

ଶ୍ରୀରାମକୃଷ୍ଣ ପରମହଂସ ଏ ଯୁବଶକ୍ତିକୁ ଭଲଭାବରେ ଉପଲବ୍ଧି କରିଥିଲେ। ନିଜର ସେମିତି କିଛି ଶିକ୍ଷାଗତ ଯୋଗ୍ୟତା ନଥିଲେ ସୁଦ୍ଧା ଶୁକଦେବଙ୍କ ଭଳି ଧ୍ୟାନ

ଧାରଣାରେ ନିର୍ଲିପ୍ତ ରହିବାକୁ ଚାହୁଁଥିବା ବିବେକାନନ୍ଦଙ୍କ ଆତ୍ମଶକ୍ତିକୁ ସେ ସକ୍ରିୟ କରିଥିଲେ। ପରେ ବ୍ୟକ୍ତିସତ୍ତାକୁ ଦେଶ ଓ ଜାତି ପାଇଁ ଉତ୍ସର୍ଗ କରିବାଲାଗି ଉଦ୍‌ବୃଦ୍ଧ କରିଥିଲେ। ଶ୍ରୀ ଶ୍ରୀ ପରମହଂସ ଏହି ଯୁବଶକ୍ତିକୁ ଶିଷ୍ୟରୂପେ ଗ୍ରହଣ କରିବାରେ ପ୍ରାଧାନ୍ୟ ଦେଉଥିଲେ। ସେହିମାନେ ହିଁ ଉତ୍ସର୍ଗୀକୃତ ମନୋଭାବ ନେଇ ଦେଶ ଓ ଜାତିପାଇଁ କିଛି କରିପାରିବେ, ଏ ବିଶ୍ୱାସ ତାଙ୍କର ଥିଲା। ଚୀନର ବିପ୍ଳବୀ ନେତା ମାଓ-ସେ-ତୁଙ୍ଗ୍ ଙ୍କର ସଫଳତାର ରହସ୍ୟ ଥିଲେ ଏଇ ଯୁବଶକ୍ତି। ଜାତିର ଜନକ ମହାତ୍ମା ଗାନ୍ଧିଙ୍କ ଅସହଯୋଗ ଆନ୍ଦୋଳନକୁ ତ୍ୱରାନ୍ୱିତ କରିଥିଲେ ଏଇ ଯୁବଶକ୍ତି। ତାଙ୍କରି ଆହ୍ୱାନରେ ସ୍କୁଲ କଲେଜ ଛାଡ଼ି ଆସିଥିବା ଛାତ୍ରଚାତ୍ରୀମାନେ ପଥଭ୍ରଷ୍ଟ ହେଲେ ଏ ଶକ୍ତି କିପରି ଭୟାବହ ହୋଇ ଉଠେ, ସମଗ୍ର ବିଶ୍ୱକୁ ଆତଙ୍କବାଦରେ ତରହର କରି ଦେଇଥିବା ତାଲିବାନଙ୍କଠାରୁ ଆଉ ଉତ୍କୃଷ୍ଟ ଉଦାହରଣ ନାହିଁ। ଉର୍ଦ୍ଦୁରେ ଏ 'ତାଲିବାନ' ଶବ୍ଦର ଅର୍ଥ ଶିକ୍ଷାନିବାସ୍ ଛାତ୍ର ବା ଶିଷ୍ୟ। ସ୍କୁଲ କଲେଜ ଛାଡ଼ି ଏମାନେ ଏକ ଅପଶକ୍ତିଦ୍ୱାରା ପରିଚାଳିତ ହୋଇ ପୃଥିବୀ ବକ୍ଷରେ ଧ୍ୱଂସର ଇସ୍ତାହାର ତୋଳି ଦେଇଗଲେ।

ଯୁଗେ ଯୁଗେ ଏ ଯୁବଶକ୍ତି ମହତର ଉଦ୍ଦେଶ୍ୟ ନିମନ୍ତେ ଉତ୍ସର୍ଗୀକୃତ ହୋଇଥିଲେ ସୁଦ୍ଧା, ସଂପ୍ରତି ନ୍ୟସ୍ତ ସ୍ୱାର୍ଥବାଦୀ ରାଜନୈତିକ ନେତା, ଅସାମାଜିକ ବ୍ୟକ୍ତିମାନେ ଯୁବଶକ୍ତିକୁ ହାତବାରିସି କରି ସେମାନଙ୍କୁ ଧ୍ୱଂସାତ୍ମକ କାର୍ଯ୍ୟରେ ଲିପ୍ତ କରାଉଛନ୍ତି। ଉତ୍ତମ ନେତୃତ୍ୱର ଅଭାବରେ ଏମାନେ ଅସାମାଜିକ କାର୍ଯ୍ୟକଳାପରେ ଲିପ୍ତ ରହୁଛନ୍ତି। ମଦ, ଗଞ୍ଜେଇ, ଅଫିମ, ବ୍ରାଉନସୁଗାର, ଚରସ୍ ଆଦି ସେବନ କରି ଜୀବନର ଏ ସୁବର୍ଣ୍ଣ ଅଧ୍ୟାୟକୁ ନଷ୍ଟ କରିଚାଲିଛନ୍ତି।

ଯୁବଶକ୍ତି ସର୍ବଦା ଏକ ଆଦର୍ଶ ବ୍ୟକ୍ତିତ୍ୱକୁ ନିକର ପଥପ୍ରଦର୍ଶକ ବୋଲି ଗ୍ରହଣ କରେ। ବିବେକାନନ୍ଦ, ସୁଭାଷ ବୋଷ, ଗାନ୍ଧି, ଗୋପବନ୍ଧୁ, ମଧୁବାବୁ ଆଦିଙ୍କର ବ୍ୟକ୍ତିତ୍ୱରେ ଅନୁପ୍ରାଣିତ ହୋଇ ଅତୀତରେ ଏମାନେ ବହୁ ଅସାଧ୍ୟସାଧନ କରିଛନ୍ତି। କିନ୍ତୁ ଆଜି ସେ ଯାହାକୁ ଆଦର୍ଶ ବୋଲି ଗ୍ରହଣ କରୁଛି, ବହୁ କମ୍ ସମୟ ଭିତରେ ସେ ବ୍ୟକ୍ତିତ୍ୱଟିର ଦୁର୍ନୀତିଗ୍ରସ୍ତ ରୂପଟି ତା ଆଗରେ ଉଦ୍ଭାସିତ ହେଉଛି। ରାଜନୈତିକ କ୍ଷେତ୍ର ହେଉ, ସାମାଜିକ କ୍ଷେତ୍ର ହେଉ, କ୍ରୀଡ଼ା କ୍ଷେତ୍ର ହେଉ କିମ୍ବା ଆଧ୍ୟାତ୍ମିକ କ୍ଷେତ୍ର ହେଉ, ଏପରିକି ପାରିବାରିକ କ୍ଷେତ୍ରରେ ସୁଦ୍ଧା ନିର୍ମଳ ବ୍ୟକ୍ତିତ୍ୱର ଅଭାବ ସେମାନଙ୍କ ଆତ୍ମବିଶ୍ୱାସକୁ ଦୁର୍ବଳ କରିଦେଇଛି। ସେମାନେ ଆସ୍ଥାହରା ହୋଇ ପଡ଼ିଛନ୍ତି। ଶିକ୍ଷା

ଅନୁଷ୍ଠାନମାନଙ୍କରେ ମେଧା ପରିବର୍ତ୍ତେ ଅର୍ଥ ହିଁ ହୋଇଛି ଯୋଗ୍ୟତାର ମାପକାଠି। ପ୍ରତିଭାର ଅବମୂଲ୍ୟାୟନ ପରବର୍ତ୍ତୀ ପର୍ଯ୍ୟାୟରେ ଛାତ୍ରଟିକୁ ପ୍ରତିକ୍ରିୟାଶୀଳ କରାଇ ସମାଜରେ ବିଶୃଙ୍ଖଳିତ ପରିସ୍ଥିତି ସୃଷ୍ଟି କରୁଛି। ଶିକ୍ଷାଗତ ଯୋଗ୍ୟତା ଥାଇ ସୁଦ୍ଧା ଜୀବନର ନିଶ୍ଚିନ୍ତ ଅବଲମ୍ବନ ଚାକିରି ଖଣ୍ଡେ ମିଳୁନି। ଆମର ତ୍ରୁଟିପୂର୍ଣ୍ଣ ଶିକ୍ଷା ପଦ୍ଧତି

ତାକୁ ଆତ୍ମନିର୍ଭରଶୀଳ ହେବାର ପ୍ରତିଶ୍ରୁତି ଦେଉନାହିଁ । ସାମ୍ପ୍ରତିକ ସମାଜରେ ଯୁବମାନସକୁ ଉପଯୁକ୍ତ ସଂସ୍କାର ପ୍ରଦାନ କରି ଆସୁଥିବା ପାରିବାରିକ ମୂଲ୍ୟବୋଧ ଆମର କ୍ଷୁର୍ଣ୍ଣ ହୋଇଛି । ପରିବାରର ବୟୋଜ୍ୟେଷ୍ଠମାନେ ଦୁର୍ନୀତିଗ୍ରସ୍ତ ଓ ନିଶାସକ୍ତ ହେଉଛନ୍ତି । ପିତାମାତାଙ୍କ ଭିତରେ ତିକ୍ତତା, ସମ୍ପର୍କୀୟମାନଙ୍କ ଭିତରେ ହିଂସାବାଦ, ସହଯୋଗ ସହାନୁଭୂତିର ଅଭାବ ତାକୁ ବିଷାଦଗ୍ରସ୍ତ କରିଛି । ପ୍ରେମରେ ଅସଫଳତା ଅନେକ ସମୟରେ ଯୁବଶକ୍ତିକୁ ଶିଥିଳ କରି ଦେଇଛି, ତାଙ୍କ ଜୀବନର ମାଦକତା ଅପହରଣକରି ସେମାନଙ୍କୁ ଯାନ୍ତ୍ରିକ କରିଦେଇଛି । ଇପ୍‌ସିତ ଜୀବନ ସଙ୍ଗୀ ବା ସଙ୍ଗିନୀର ଅଭାବରେ ସେମାନେ ବିଷାଦଗ୍ରସ୍ତ ଜୀବନକୁ ଆପଣେଇ ନେଉଛନ୍ତି । ଏଥିପାଇଁ ଆମର ସାମାଜିକ ବିଧିବ୍ୟବସ୍ଥା ଅନେକ ପରମାଣରେ ଦାୟୀ । ଆମର ନିର୍ବାଚନୀ ରାଜନୀତିରେ ଯୁବଶକ୍ତିକୁ ହାତବାରିସି କରି ନେତାମାନେ ସେମାନଙ୍କୁ ଅନେକ ସ୍ୱପ୍ନ ଦେଖାଇ ଗାଦି ଅଧିକୃତ ପରେ ସେମାନଙ୍କ ନ୍ୟୁନତମ ଦାବିକୁ ଅସ୍ୱୀକାର କରିବା ଯୁବସମାଜ ପାଇଁ ଏକ ଶକ୍ତ ଧକ୍‌କା ।

ତେବେ ଏ ସମସ୍ୟାର ସମାଧାନ କେଉଁଠି ? ଏ ଗୁରୁତର ସଂକଟର ସମ୍ମୁଖୀନ ହେବାପାଇଁ ଆମକୁ ସମ୍ପୂର୍ଣ୍ଣ ଭାବରେ ଆମର ସାମାଜିକ ମୂଲ୍ୟବୋଧକୁ ସଜାଡ଼ିବାକୁ ପଡ଼ିବ । ପରିବାରରେ ସନ୍ତାନକୁ ଉତ୍ତମ ସଂସ୍କାର ଦେବାପାଇଁ ପ୍ରଥମେ ଅଭିଭାବକମାନେ ମାର୍ଜିତ ହେବାକୁ ପ୍ରତିଜ୍ଞାବଦ୍ଧ ହେବେ । ପିଲାମାନଙ୍କୁ ହତୋତ୍ସାହିତ କଲାଭଳି କୌଣସି ଘଟଣା ଯେପରି ପରିବାରରେ ନ ଘଟେ ସେଥିପ୍ରତି ସମସ୍ତେ ସଜାଗ ରହିବା ଉଚିତ । ପିଲାଦିନୁ ବାପାମାଆଙ୍କର ଡକ୍ଟର/ଇଞ୍ଜିନିୟର ଆଦି ହେବାର ଇଚ୍ଛାକୁ ମୁଣ୍ଡରେ ଲଦି ବୋହିବା ପରିବର୍ତ୍ତେ, ପିଲାଯି ନିଜର ପ୍ରତିଭାସାମର୍ଥ୍ୟ ଓ ରୁଚି ଅନୁସାରେ ତାର ଜୀବିକା ନିର୍ବାଚନ କରିବାର ସୁଯେଗା ପାଉ । କୌଣସି ଗୋଟିଏ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ହାସଲରେ ବିଫଳ ହେଲେ ସେ ଯେପରି ନିଜକୁ ଆପାଂକ୍ତେୟ ବା ବ୍ୟର୍ଥ ବ୍ୟକ୍ତିତ୍ୱ ବୋଲି ନ ଭାବେ । ଶିକ୍ଷା ଅନୁଷ୍ଠାନରେ ଚରିତ୍ରବାନ ଶିକ୍ଷକମାନଙ୍କର ନିଯୁକ୍ତି ଏବଂ ନିଯୁକ୍ତ ଶିକ୍ଷକମାନଙ୍କ ଚାରିତ୍ରିକ ଶୃଙ୍ଖଳା ଉପରେ ଧ୍ୟାନ ଦେବା ଯଥେଷ୍ଟ ଆବଶ୍ୟକ । ପାଠକ୍ରମରେ ନୈତିକ ଶିକ୍ଷା ଅନ୍ତର୍ଭୁକ୍ତ କଲେ ଛାତ୍ରଛାତ୍ରୀମାନେ ସମାଜପ୍ରତି ସେମାନଙ୍କର ଦାୟିତ୍ୱ ଓ କର୍ତ୍ତବ୍ୟ ସମ୍ପର୍କରେ ସମାଜସେବା, କ୍ରୀଡ଼ା ସଂଗଠନ, କଳାସଂସ୍କୃତି ଆଦି ଅନୁଷ୍ଠାନ ସହ ଜଡ଼ିତ କରାଇଲେ ବିଶୃଙ୍ଖଳିତ ହେବାପାଇଁ ସେମାନେ ସୁଯୋଗ ପାଇବେ ନାହିଁ ।

ଯୁବଶକ୍ତି ଦେଶର ମେରୁଦଣ୍ଡ । ଯୁବଶକ୍ତି ଯେଉଁଠି ଦୁର୍ବଳ, ବିଶୃଙ୍ଖଳ, ଅପାରଗ ଅଥର୍ବ ସେ ଦେଶର ବର୍ତ୍ତମାନ ତ ଅସହ୍ୟ ଭବିଷ୍ୟତ ମଧ୍ୟ ଅନ୍ଧକାରାମୟ । ଏ ଶକ୍ତିକୁ ଅତି ସହଜରେ କୌରସି ନିର୍ଦ୍ଦିଷ୍ଟ ଆକୃତି ଦିଆଯାଇପାରେ । ଏ ଶକ୍ତିକୁ ତେଣୁ ଲକ୍ଷ୍ୟଭ୍ରଷ୍ଟ ହେବାକୁ ନ ଦେଇ ସମାଜର କଲ୍ୟାଣକାରୀ ଦିଗରେ ଲଗାଇବାକୁ ସମସ୍ତେ ପ୍ରଚେଷ୍ଟା ହେବା ଉଚିତ ।

# ଆମ ପରଂପରାରେ "ରାଗିଂ" ଓ ସାଂପ୍ରତିକ ଯୁବ ସମାଜ

"ରାଗିଂ" ଶବ୍ଦର ଓଡ଼ିଆରେ କୌଣସି ଆକ୍ଷରିକ ଅର୍ଥ ନ ଥିଲେ ସୁଦ୍ଧା ନବାଗତକୁ ହାସ୍ୟାସ୍ପଦ କରିବା ଥଟ୍ଟା ତାମସା ହାସ୍ୟ ରହସ୍ୟ ମାଧ୍ୟମରେ ମୃଦୁ ପୀଡ଼ନ କରିବା ଆଦି ବୁଝାଯାଏ। ଏହି ମୃଦୁ ପୀଡ଼ନରେ ପୀଡ଼କର ପୀଡ଼ିତ ପ୍ରତି ଥାଏ ସ୍ନେହ ଶ୍ରଦ୍ଧା ଆଦର ପ୍ରୀତି ଓ ସହାନୁଭୂତି। ଏ ଟାହି ଟାପରା ଭିତରେ ଥାଏ ନିର୍ମଳ ଆନନ୍ଦ, ମଧୁର ସଂପର୍କର ସେତୁ। କିନ୍ତୁ ଯେଉଁଠି ଏହା ବିମଳ ଆନନ୍ଦ ପରିବର୍ତ୍ତେ ହିଂସ୍ର ଆନନ୍ଦ ବା ସ୍ୟାଡିଷ୍ଟିକ୍ ପ୍ଲେଜର୍‌ର ରୂପ ନିଏ ସେତେବେଳେ 'ରାଗିଂ' ତାର ମହାନ ପରଂପରାର ମହତ୍ତ୍ୱ ହରାଇ ବସେ। ପରିଣତି ଭୟାବହ ହୋଇଉଠେ। ବେଳେବେଳେ ମୃତ୍ୟୁର ତାଣ୍ଡବ ଲୀଳା ମଧ୍ୟ ସୃଷ୍ଟି ହୋଇଥାଏ।

ରାଗିଂ ଶବ୍ଦର ଅର୍ଥ ପାଶ୍ଚାତ୍ୟ ପରଂପରାରେ ଯାହା ହେଉନା କାହିଁକି ଆମ ଭାରତୀୟ ପରଂପରାରେ ଏହାର ଏକ ନିଜସ୍ୱ ମୂଲ୍ୟବୋଧ ରହିଛି। ଏହା ଆମ ସଂସ୍କୃତିରେ ସଂପୂର୍ଣ୍ଣ ନବାଗତ ନୁହେଁ। ବିବାହ ଆମ ସମାଜରେ ଏକ ବହୁ ପ୍ରାଚୀନ ପବିତ୍ର ଅନୁଷ୍ଠାନ। ଏହି ଅନୁଷ୍ଠାନରେ ପରସ୍ପର ଅଚିହ୍ନା ଅଜଣା ଦୁଇଟି ପରିବାର ସଂପର୍କର ସୁଦୃଢ଼ ରଜ୍ଜୁରେ ଏକତ୍ରିତ ହୁଅନ୍ତି ସେହି ସଂପର୍କର ସେତୁରେ ରାଗିଂ ଫୁଲଚନ୍ଦନ ବର୍ଷିଥାଏ। ପ୍ରଥମତଃ ବର ଯେତେବେଳେ ବରଯାତ୍ରୀ ନେଇ କନ୍ୟାଘରକୁ ଆସେ ସେତେବେଳେ ବରପକ୍ଷ ଓ କନ୍ୟା ପକ୍ଷ ଭିତରେ ଏଇ ରାଗିଂ କାର୍ଯ୍ୟକ୍ରମ ଆରମ୍ଭ ହୋଇଯାଏ। ପରସ୍ପର ସୁଯୋଗ ଉଣ୍ଡି ବସିଥାଆନ୍ତି ପରସ୍ପରକୁ ଅପଦସ୍ତ କରିବା ପାଇଁ। ବରଯାତ୍ରୀଙ୍କ ବିଛଣା ତଳେ ପାମ୍ପଡ଼, ସରବତରେ ଲୁଣ ପାନରେ ଲଙ୍କା ସରୁଚକୁଳିରେ କପଡ଼ା ଆଦି ମିଶାଇ ବର ଓ ବରପକ୍ଷର ଲୋକମାନଙ୍କୁ ଖାଇବାକୁ ଦିଅନ୍ତି। ବେଦୀ ଉପରେ ବରକୁ ଶଳା ବିଧା ଦେବା ବିଧିକୁ ଆମେ ପ୍ରକାରାନ୍ତରେ ଏହି ରାଗିଂ ଆଖ୍ୟା ଦେଇପାରିବା। ବର ବେଦୀରେ ବସିଥିବା ସମୟରେ ଶାଳୀମାନେ ବରର ପିନ୍ଧାଲୁଗା ସହ ପଇଡ଼ି ମସିଣାରେ ସେଫ୍‌ଟେପିନ୍ ଲଗାଇ ଦିଅନ୍ତି ବର ଉଠିବା ସମୟରେ ତା ସହ ପଇଡ଼ି ମସିଣାଟି ଉଠେ। ଦେଖଣା ହାରୀଙ୍କ ଭିତରେ ହାସ୍ୟ ରୋଳ ସୃଷ୍ଟି ହୁଏ। ବିଚାରା ବରଟି

ସମସ୍ତଙ୍କ ସମ୍ମୁଖରେ ଅପଦସ୍ତ ହୁଏ। ଏଥିରେ କେବଳ ପରସ୍ପର ଭିତରେ ନିର୍ମଳ ଆନନ୍ଦ ସୃଷ୍ଟି ଉଦ୍ଦେଶ୍ୟ ଥାଏ। ବରଟି ଶ୍ୱଶୁର ଘରେ ନିର୍ବୋଧ ବୋଲି ପ୍ରମାଣିତ ହେବା ପରିବର୍ତ୍ତେ ନିଜର ବୁଦ୍ଧିମତ୍ତା ଓ ପ୍ରତ୍ୟୁତ୍ପନ୍ନମତିତା ସାବ୍ୟସ୍ତ କରିବା ପାଇଁ ଅନୁଭୂତି ସମ୍ପନ୍ନ ଲୋକମାନେ ଅନୁକୂଳ କରି ଶ୍ୱଶୁର ଘର ଯିବାପୂର୍ବରୁ ସଜାଗଦୃଷ୍ଟି ଦ୍ୱାରା ସଦା ସତର୍କ ରହିବାକୁ ଉପଦେଶ ଦେଇଥା'ନ୍ତି। ଠିକ୍ ସେମିତି ବୋହୂଟି ଯେତେବେଳେ ଶାଶୁ ଘରକୁ ଯାଏ, ନଣନ୍ଦ ଦିଅର ଯାଆ ଆଦି ବୋହୂଟିର ଯୋଗ୍ୟତା ପରୀକ୍ଷା କରନ୍ତି, ଏହା ମଧ୍ୟ ଏକ ପ୍ରକାର ରାଗିଂ। ସରବତରେ ଭାଙ୍ଗ ମିଶାଇ ସମସ୍ତଙ୍କ ଆଗରେ ହାସ୍ୟାସ୍ପଦ କରନ୍ତି। ତାର ଘରକରଣା ବୁଦ୍ଧି ଅଛି କି ନାହିଁ ଜଟିଳ ପରିସ୍ଥିତି ସହ ସମ୍ମୁଖୀନ ହେବାର ଦକ୍ଷତା ଅଛି କି ନାହିଁ ସେସବୁ ପରୀକ୍ଷା କରିବା ପାଇଁ ସମସ୍ତେ ଲାଗିପଡ଼ନ୍ତି। ବିଚାରୀ ବୋହୂଟିକୁ ଖଣ୍ଡା ଧାରରେ ଚାଲିବା ଭଳି ସେସବୁ ଅଭାବନୀୟ ପରିସ୍ଥିତିକୁ ସମ୍ମୁଖୀନ ହେବାକୁ ପଡ଼ିଥାଏ। କେଉଁଠି ସେ କୃତୀତ୍ୱର ସହ ଉତ୍ତୀର୍ଣ୍ଣ ହୁଏ ତ କେଉଁଠି ହାସ୍ୟାସ୍ପଦ ହୋଇ ସମସ୍ତଙ୍କ ଆଗରେ ଅପଦସ୍ତ ହୁଏ। ପରବର୍ତ୍ତୀ ପର୍ଯ୍ୟାୟରେ ନିଜକୁ ସଜାଡ଼ି ନିଏ। ସଦା ଜାଗ୍ରତ ଦୃଷ୍ଟିକୋଣ ନେଇ ନିଜର ସଂସାର ରଥକୁ ଆଗକୁ ଗଡ଼ାଏ। ଅଲିଅଳରେ ବଢ଼ିଥିବା, ସମସ୍ୟା ସହ ଅନଭ୍ୟସ୍ତ ଥିବା ଝିଅଟି ଖୁବ୍ କମ୍ ଦିନ ଭିତରେ ଜଣେ ଗୃହକର୍ମ ନିପୁଣା, ଦକ୍ଷା ଓ ଅଭିଜ୍ଞା ବୋହୂଟିଏ ପାଲଟିଯାଏ। ବାସ୍ତବ ପକ୍ଷରେ ଶତ୍ରୁଭାବାପନ୍ନ ମନୋବୃତ୍ତି ନେଇ କେହି କାହାପ୍ରତି ଏଭଳି ଆଚରଣ କରି ନଥାନ୍ତି। କେବଳ ନିର୍ମଳ ଆନନ୍ଦ ହିଁ ଉଭୟଙ୍କର ଲକ୍ଷ୍ୟ ଥାଏ। ଅପରପକ୍ଷେ ହାସ୍ୟାସ୍ପଦ ହେଉଥିବା ବ୍ୟକ୍ତିଟି ଧୀରେ ଧୀରେ ଚାଲାକ୍ ଚତୁର ଓ ଦୂରଦୃଷ୍ଟିସମ୍ପନ୍ନ ହୋଇଥାଏ।

ସମୟ ବିଶେଷରେ ହିଂସ୍ର ଆନନ୍ଦ ଉଦ୍ରେକକାରୀ ଏଇ ରାଗିଂ କିଭଳି ପ୍ରଳୟଙ୍କାରୀ ରୂପ ନିଏ ତାହା ମଧ୍ୟ ଆମ ପରମ୍ପରାରେ ବିରଳ ନୁହେଁ। ଦୁର୍ଯ୍ୟୋଧନ ପାଣ୍ଡବଙ୍କ ଦ୍ୱାରା ଇନ୍ଦ୍ରପ୍ରସ୍ଥରେ ନବ ନିର୍ମିତ ପ୍ରାସାଦକୁ ନିମନ୍ତ୍ରିତ ହୋଇ ଆସିଛି। ସେଠାରେ ସ୍ଫଟିକ ନିର୍ମିତ ଚଟାଣକୁ ଜଳରାଶି ବୋଲି ଭାବି ସନ୍ତରଣ କରିବାର ଉପକ୍ରମ କରିଛି ଏବଂ ଜଳରାଶିକୁ ସ୍ଫଟିକ ପଥର ବୋଲି ବିଚାର କରି ଜଳରାଶି ଭିତରେ ଖସି ପଡ଼ିଛି। ଭାଉଜ ଦ୍ରୌପଦୀ ଦିଅର ଦୁର୍ଯ୍ୟୋଧନର ଏ ନିର୍ବୋଧତାକୁ ଉପଭୋଗ କରିବା ସଙ୍ଗେ ସଙ୍ଗେ ଦୁର୍ଯ୍ୟୋଧନକୁ ମୃଦୁପୀଡ଼ନ କରିବା ଛଳରେ ଅନ୍ଧର ପୁଅ ଅନ୍ଧବୋଲି କହି ହିଂସ୍ର ଆନନ୍ଦ ଅନୁଭବ କରିଛନ୍ତି। ଦ୍ରୌପଦୀଙ୍କର ଏଇ ଟିକକ ଅପରିଣାମଦର୍ଶିତା ଦୁର୍ଯ୍ୟୋଧନ ଅନ୍ତରରେ ପ୍ରତିହିଂସାର ବହ୍ନି ଜାଳି ଦେଇଛି। କୁରୁ ସଭାରେ ଦ୍ରୌପଦୀଙ୍କୁ ବିବସ୍ତ୍ର କରିବାଠାରୁ ଆରମ୍ଭ କରି କୁରୁକ୍ଷେତ୍ରର ମହାପ୍ରଳୟ ପର୍ଯ୍ୟନ୍ତ ସବୁ ହିଁ ଏହାର ବିଷମୟ ପରିଣତି।

ଉତ୍କଳ ଗୌରବ ମଧୁସୂଦନ ଯେତେବେଳେ ଗାଁ ଛାଡ଼ି ସହରକୁ ପାଠପଢ଼ି ଆସିଲେ ସେତେବେଳେ ତାଙ୍କର ମୁଣ୍ଡରେ ଗୋଟିଏ ପିଲ୍‌କା ଚୁଟି ଥିଲା। ତାଙ୍କର ଗ୍ରାମ୍ୟ ବେଶଭୂଷା ଲାଜକୁଳା ସ୍ୱଭାବ ବିଦ୍ୟାଳୟର ଛାତ୍ରମାନଙ୍କୁ ବେଶ୍ ହାସ୍ୟ ରସର ଖୋରାକ ଯୋଗାଇଥିଲା। ଥରେ ଏହି ଛାତ୍ରମାନଙ୍କ ମଧ୍ୟରୁ କେହି ତାଙ୍କ ଅଜାଣତରେ ତାଙ୍କର ଚୁଟିଟି କାଟି ଦେଇଥିଲେ। ସାଙ୍ଗସାଥୀଙ୍କର ଟାହିଟାପରା ଦ୍ୱାରା ଅନେକାଂଶରେ ନିଜକୁ ସଜାଡ଼ି ନେଇ ସହରୀ ସଭ୍ୟତା ଓ ସହରୀ ବାଳକଙ୍କ ସହ ସେ ପ୍ରତିଦ୍ୱନ୍ଦ୍ୱୀ ହୋଇପାରିଥିଲେ। ତେଣୁ ବ୍ୟକ୍ତିତ୍ୱର ବିକାଶ ପାଇଁ ଏହି ମୃଦୁପୀଡ଼ନ ବା ରାଗିଂର ଯେ ଆବଶ୍ୟକତା ରହିଛି ତାହା ଅନସ୍ୱୀକାର୍ଯ୍ୟ।

କିନ୍ତୁ ସାଂପ୍ରତିକ କାଳରେ ନବାଗତକୁ ସ୍ୱାଗତ କରିବାର ଏହି ପାରମ୍ପରିକ ପଦ୍ଧତି ସଂପୂର୍ଣ୍ଣ ଭାବରେ ବଦଳି ଯାଇଛି। ଏଠାରେ ଆଉ ନିର୍ମଳ ଆନନ୍ଦ ନାହିଁ। ନବାଗତମାନଙ୍କୁ ରାଗିଂ ନାମରେ ମାନସିକ ଯନ୍ତ୍ରଣା ସହ ଶାରୀରିକ ଯନ୍ତ୍ରଣା ଦେଇ ପରିସ୍ଥିତିକୁ ଅତି ଜଟିଳ କରିଦିଆଯାଉଛି। ରାଗିଂରେ ନବାଗତର କଲ୍ୟାଣକାରୀ ଦିଗ ଆଦୌ ନାହିଁ। ଶିକ୍ଷା ଅନୁଷ୍ଠାନମାନଙ୍କରେ ନବାଗତମାନଙ୍କ ପାଇଁ ସ୍ୱାଗତ ସଭାର ଆୟୋଜନ କରି ମୃଦୁପୀଡ଼ନ ମାଧ୍ୟମରେ ଭାବର ଆଦାନ ପ୍ରଦାନ କରିବା ମୁଖ୍ୟ ଉଦ୍ଦେଶ୍ୟ ହେଲେ ସୁଦ୍ଧା ଏହାର ପ୍ରକୃତ ଉଦ୍ଦେଶ୍ୟ ସର୍ବଥା କାର୍ଯ୍ୟକାରୀ ହେଉନାହିଁ। ବିଶେଷତଃ ମେଡ଼ିକାଲ ଓ ଇଞ୍ଜିନିୟରିଂ କଲେଜମାନଙ୍କରେ ବହୁ ନିରୀହ ଛାତ୍ର ଏହି ରାଗିଂର ଶିକାର ହୋଇ ଶିକ୍ଷାୟତନ ପରିତ୍ୟାଗ କରୁଛନ୍ତି। ଯେଉଁମାନେ ଶିକ୍ଷାୟତନ ଛାଡୁ ନାହାଁନ୍ତି, ସେମାନଙ୍କୁ ବହୁ ଶାରୀରିକ ଓ ମାନସିକ ନିର୍ଯ୍ୟାତନାର ଶିକାର ହେବାକୁ ପଡୁଛି। କେଉଁଠି କିଏ ଜଳନ୍ତା ସିଗାରେଟ୍‌ରେ କାହାକୁ ଚେଙ୍ଗ ଦେଲାଣି ତ କିଏ କେଉଁଠି କାହାକୁ ଜଳନ୍ତା ହିଟରରେ ପରିସ୍ରା କରିବାକୁ ବାଧ୍ୟ କଲାଣି। ଛାତ ଉପରୁ ତଳକୁ ଡେଇଁବାକୁ କାହାକୁ ପଡୁଛି ତ ଚାରିଜଣ ନବାଗତ ଛାତ୍ର ରାତିସାରା ମଶାରୀ ଧରି ଠିଆ ହେଉଛନ୍ତି ସିନିୟର ଛାତ୍ରଟି ନିଶ୍ଚିନ୍ତରେ ତା ତଳେ ରାତିସାରା ଶୋଉଛି। ଏସବୁର ଅମାନ୍ୟ କଲେ ସେମାନଙ୍କୁ ନିର୍ଘାତ ମାଡ଼ ସହିବାକୁ ପଡ଼ୁଛି। ଏସବୁ ଘୃଣ୍ୟ ପ୍ରଥାକୁ ଦୂରୀଭୂତ ନ କଲେ ଆମର ଶିକ୍ଷାୟତନ କଳୁଷିତ ହୋଇପଡ଼ିବ। ଶିକ୍ଷା ନାଁରେ ଗୁଡ଼ାଏ କୁଶିକ୍ଷା ଓ କୁପରମ୍ପରା ହିଁ ବଳବତ୍ତର ହୋଇ ରହିବ।

ଏସବୁର ନିରାକରଣ ପାଇଁ ଛାତ୍ରଛାତ୍ରୀ, ଅଭିଭାବକ, ଶିକ୍ଷକ ଶିକ୍ଷୟିତ୍ରୀ ଓ ସରକାରଙ୍କର ମିଳିତ ଉଦ୍ୟମର ଆବଶ୍ୟକତା ରହିଛି। ପ୍ରଥମେ ରାଗିଂ କ'ଣ ସେ ସଂପର୍କରେ ଛାତ୍ର ସମାଜକୁ ଭଲଭାବରେ ବୁଝାଇବା ଆବଶ୍ୟକ। ଶିକ୍ଷାୟତନ

ମାନଙ୍କରେ ଛାତ୍ରମାନଙ୍କ ଭିତରେ ସହୃଦୟତା ସ୍ନେହ ସୌହାର୍ଦ୍ଦ୍ୟ ବୃଦ୍ଧିପାଇଁ ର୍‌ାଗିଂର ଆବଶ୍ୟକତା ରହିଛି। ହିଂସ୍ର ଆନନ୍ଦ କିମ୍ବା ପ୍ରତିଶୋଧ ନେବାପାଇଁ ନୁହେଁ। ଛୋଟିଆ ଛୋଟିଆ ର୍‌ାଗିଂ ଛାତ୍ରଛାତ୍ରୀମାନଙ୍କର ବ୍ୟକ୍ତିତ୍ୱ ବିକାଶ ପାଇଁ ପ୍ରମୁଖ ଭୂମିକା ଗ୍ରହଣ କରେ। କେତେ ଲୋକଙ୍କ ସାମ୍ନାରେ ଗୀତ ଗାଇବା ନାଚିବା, ଅଭିନୟ କରିବା କୌଣସି ପ୍ରହେଳିକାର ଉତ୍ତର ଦେବା କୌଣସି ନିର୍ଦ୍ଦିଷ୍ଟ ବିଷୟବସ୍ତୁ ଉପରେ ପାଞ୍ଚମିନିଟ୍ କହିବା, କିଛି ଆପତ୍ତି ଅଭିଯୋଗ ନେଇ ଅଧ୍ୟକ୍ଷ କିମ୍ବା ଅଧ୍ୟାପକଙ୍କ ଚ୍ୟାମ୍ବରକୁ ଯିବାକୁ ବାଧ୍ୟ କରିବା ଇତ୍ୟାଦି। ଏହାଦ୍ୱାରା ପିଲାଟିର ଡରକୁଳା ସ୍ୱଭାବ, ଲାଜକୁଳା ସ୍ୱଭାବ, ଗ୍ରାମ୍ୟ ପ୍ରବୃତ୍ତି ଅନେକାଂଶରେ ଦୂରୀଭୂତ ହୁଏ। ସେମାନେ ନିର୍ଭୀକ, କର୍ମଚଞ୍ଚଳ, ପ୍ରତ୍ୟୁତ୍ପନ୍ନମତ ସମ୍ପନ୍ନ ହୋଇଥାନ୍ତି। ଦୂରଦୃଷ୍ଟିସମ୍ପନ୍ନ ହେବାଦ୍ୱାରା ପରିସ୍ଥିତି ସହ ଲଢ଼ିବାର ଶକ୍ତି ସେମାନେ ସଞ୍ଚୟ କରିପାରନ୍ତି। ସେମାନଙ୍କର ବ୍ୟକ୍ତିତ୍ୱ ଶାଣିତ ଓ ମାର୍ଜିତ ହୁଏ। ପ୍ରତିଷେଧକ ଟୀକାଦାନ ଦ୍ୱାରା ଶରୀରରେ ରୋଗ ବିରୋଧୀ ଶକ୍ତି ସୃଷ୍ଟି ହେଲାଭଳି ପ୍ରତିକୂଳ ପରିସ୍ଥିତିରେ ସଂଗ୍ରାମ କରିବା ପାଇଁ ସେମାନଙ୍କ ଭିତରେ ଆତ୍ମଶକ୍ତି ବୃଦ୍ଧିପାଏ। ମାନସିକ ଦୁର୍ବଳତା ସମ୍ପୂର୍ଣ୍ଣ ଭାବରେ ଦୂରୀଭୂତ ହୋଇଯାଏ। ପ୍ରତିଯୋଗିତା ପୂର୍ଣ୍ଣ ମନୋଭାବ ନେଇ ଜୀବନ ସଂଗ୍ରାମରେ ଅଗ୍ରସର ହୁଏ।

ଏସବୁ ବିଷୟ ପର୍ଯ୍ୟାଲୋଚନା କଲେ ହୃଦ୍‌ବୋଧ ହୁଏ ବ୍ୟକ୍ତିତ୍ୱର ସାମଗ୍ରିକ ବିକାଶ ପାଇଁ ନିର୍ମଳ ଆନନ୍ଦ ସୃଷ୍ଟି କରିଥିବା ର୍‌ାଗିଂର ଯେ ଆବଶ୍ୟକତା ରହିଛି, କିନ୍ତୁ ର୍‌ାଗିଂର ଅର୍ଥ ଯେଉଁଠି ହିଂସ୍ର ଆନନ୍ଦ ଅନୁଭବ କରିବା ସେଠି ପରସ୍ପର ଭିତରେ ସ୍ନେହ ସୌଭାର୍ଦ୍ଦ୍ୟ ପ୍ରେମପ୍ରୀତି ପରିବର୍ତ୍ତେ ଏକ ହିଂସାତ୍ମକ ପରିବେଶ ସ୍ଥାପନ କରି ସାଂପ୍ରତିକ ଯୁବପୀଢ଼ି ଭିତରେ ସଂକ୍ରାମକ ରୋଗ ଭଳି ହିଂସ୍ର ଆନନ୍ଦ ସୃଷ୍ଟି କରୁଥିବା ର୍‌ାଗିଂ ବ୍ୟାପିବାରେ ଲାଗିଛି। ଫଳରେ ଶିକ୍ଷାନୁଷ୍ଠାନମାନଙ୍କରେ ଉତ୍କଟତର ସଂକଟ ସୃଷ୍ଟି ହେଉଛି। ଏସବୁର ସହଜ ସମାଧାନ ପାଇଁ ଅଭିଭାବକ ଶିକ୍ଷକ, ଶିକ୍ଷୟିତ୍ରୀ ଓ ଛାତ୍ର ସମାଜ ଆଗେଇ ଆସିବା ଦରକାର।

ସମାଜ

ସେପ୍ଟେମ୍ବର ୧୨, ୨୦୦୩

# 'ବୋଲ୍‌ବମ୍' ଓ ଯୁବସମାଜ

ଶାନ୍ତିପ୍ରିୟ ରାଜା ଗଜପତି ପ୍ରତାପରୁଦ୍ର ଦେବ ତାଙ୍କ ଜୀବନ କାଳ ଭିତରେ ଦୀର୍ଘଦିନ ଧରି ପ୍ରାଦେଶିକ ରାଜାମାନଙ୍କ ସହ ଯୁଦ୍ଧକରି କ୍ଲାନ୍ତ ହୋଇ ପଡ଼ିଥିଲେ। ତା' ସାଙ୍ଗକୁ ତାଙ୍କ ସ୍ୱାଭିମାନୀ, ବୀରପୁତ୍ର ଭଦ୍ରବାହୁଙ୍କର ବିଜୟ ନଗରର ରାଜା କୃଷ୍ଣଦେବ ରାୟଙ୍କ ରାଜସଭାରେ ଆତ୍ମହତ୍ୟା ତାଙ୍କ ମନୋବଳକୁ ସଂପୂର୍ଣ୍ଣ ଦୋହଲାଇ ଦେଇଥିଲା। ସେ ତେଣୁ ଚାହିଁଥିଲେ ଯୁଦ୍ଧ ବିରତି। ସୌଭାଗ୍ୟକୁ ହେଉ କି ଦୁର୍ଭାଗ୍ୟକୁ ହେଉ ଠିକ୍ ସେ ସମୟକୁ ଶ୍ରୀ ଚୈତନ୍ୟ ନବଦ୍ୱୀପରୁ ଆସି ପୁରୀ ଶ୍ରୀକ୍ଷେତ୍ରରେ ତାଙ୍କ ପ୍ରବର୍ତ୍ତିତ ବୈଷ୍ଣବ ଧର୍ମର ପ୍ରଚାର ଓ ପ୍ରସାର ଆରମ୍ଭ କରି ଦେଇଥିଲେ। ଉତ୍କଳୀୟ ବୈଷ୍ଣବ ଧର୍ମପରି ଶ୍ରୀଚୈତନ୍ୟଙ୍କ ପ୍ରଚାରିତ ବୈଷ୍ଣବ ଧର୍ମ ଜ୍ଞାନମିଶ୍ରା, କୃଚ୍ଛ୍ରକାୟା ସାଧନା ଓ ସଂଯମ ପଣ୍ଡିତ ନଥିଲା। ଭଜନ, କୀର୍ତ୍ତନ ଓ ନର୍ତ୍ତନ ଆଦି ସହଜ ମାର୍ଗରେ, ପ୍ରେମ ମିଶ୍ରାଭକ୍ତି ଦ୍ୱାରା ପ୍ରଭୁଙ୍କ ସାନିଧ୍ୟଲାଭ କରିହୁଏ ବୋଲି ଗୌଡ଼ିୟ ବୈଷ୍ଣବ ଧର୍ମାବଲମ୍ବୀ ବିଶ୍ୱାସ କରୁଥିଲେ।

ନିଜ ଉପରେ ନାରୀଭାବ ଆରୋପଣ କରି, ବିଶେଷତଃ ନିଜକୁ ରାଧା ବୋଲି ଭାବି ଶ୍ରୀକୃଷ୍ଣଙ୍କ ପ୍ରେମରେ ଏମାନେ ଭାବ ବିହ୍ୱଳ ହେଉଥିଲେ। ରାଧାକୃଷ୍ଣ ପ୍ରେମଲୀଳା ବର୍ଣ୍ଣନାରେ ଏମାନେ ସମସ୍ତ ସାମର୍ଥ୍ୟ ବ୍ୟୟ କରୁଥିଲେ। ଭାଗବତରେ ସାଙ୍କେତିକ ଶବ୍ଦ ଶ୍ରୀରାଧା ଏହି ଯୁଗରେ ଶ୍ରୀକୃଷ୍ଣଙ୍କର ଲୀଳା ସଙ୍ଗିନୀ ରୂପେ ପରିପୂର୍ଣ୍ଣ ବିକାଶଲାଭ କରିଥିଲା। ଏହି ସହଜ ମାର୍ଗି ମାନଙ୍କ ଭିତରେ ବ୍ୟଭିଚାର କିପରି ଅତି ଶୀଘ୍ର ପ୍ରବେଶକରି ଓଡିଶାର ଜନଜୀବନକୁ ପ୍ରଭାବିତ କରଥିଲା ଏବଂ ଏ ପ୍ରସଙ୍ଗକୁ ନେଇ ଲୋକକବି ମଧ୍ୟ "ବୋଲ ହରି ବୋଲ, ମାଗୁର ମାଛର ଝୋଳ ଷୋଡଶୀ ନାରୀର କୋଳ" ଆଦି ସମାଲୋଚନା ବ୍ୟଞ୍ଜକ କବିତା ରଚନା କରି ପକାଇଥିଲେ-ତାହା ଭିନ୍ନ ପ୍ରସଙ୍ଗ। କିନ୍ତୁ ପ୍ରତାପରୁଦ୍ର ଦେବଙ୍କ ଯୁଦ୍ଧକ୍ଳାନ୍ତ ଓ ପୁତ୍ର ବିରହ ଜନିତ ସଂତାପିତ ପ୍ରାଣକୁ କିଛି ପରିମାଣରେ ଶୀତଳତା ଆଣି ଦେଇଥିଲା ଶ୍ରୀଚୈତନ୍ୟଙ୍କ ପ୍ରଭାବ। ସେ ଯଦ୍ଧରୁ ବିରତ ହୋଇ ମହାରାଣୀଙ୍କ ସହ ବୈଷ୍ଣବ

ଧର୍ମ ଦୀକ୍ଷା ନେଇଥିଲେ ରାଜା ଅନୁଗତ ଧର୍ମ। ରାଜା ଯେତେବେଳେ ଶ୍ରୀଚୈତନ୍ୟଙ୍କ ନବ ପ୍ରଚାରିତ ବୈଷ୍ଣବ ଧର୍ମରେ ଦୀକ୍ଷିତ ହେଲେ ତାଙ୍କର ମନ୍ତ୍ରୀ ପରିଷଦ ଓ ସୈନ୍ୟସାମନ୍ତମଧ୍ୟ ଖଣ୍ଡା ଖର୍ପର ଛାଡି ଗୈରିକ ବସ୍ତ୍ର ପିନ୍ଧିଲେ। ଚିତା ତିଳକ ସାଜି ହାତରେ ଖୋଳ କରତାଳ ଧରିଲେ। କିନ୍ତୁ ଶତ୍ରୁ ରକ୍ତକୁ ଚିତାତିଳକ କରୁଥିବା ଓ ନିଜ ବାହୁ ବଳରେ ଶତ୍ରୁର ଶିର ଭୂଲୁଣ୍ଠିତ କରୁଥିବା ଏମାନଙ୍କ ଶକ୍ତ ମୁଷ୍ଟି କ'ଣ ଖୋଳ କରତାଳରେ ସନ୍ତୁଷ୍ଟ ହେଲା ? ବରଂ ଏମାନଙ୍କ ବଜ୍ର ମୁଷ୍ଟିର ଆଘାତରେ ମୃଦଙ୍ଗ ଚୂର୍ଣ୍ଣ ବିଚୂର୍ଣ୍ଣ ହେଲା, କରତାଳ ଖଣ୍ଡ ବିଖଣ୍ଡିତ ହେଲା। ଏମାନଙ୍କ ଯୁଦ୍ଧ ପିପାସୁ, ଦର୍ପିତ ପୌରୁଷ ବୈଷ୍ଣବୀୟ ଚିନ୍ତାଧାରା "ତୃଣାଦପି ସୁନୀଚେନ" ଭାବକୁ ଆଦୌ ଗ୍ରହଣ କରିପାରିଲା ନାହିଁ। ଏମାନଙ୍କ ଭିତରୁ ଅନେକ ମାନସିକ ଭାରସାମ୍ୟ ହରେଇ ବସିଲେ। ଉପଯୁକ୍ତ ଦିଗ୍‌ଦର୍ଶନ ଅଭାବରୁ ଏତେ ବଡ଼ ସାହସୀ, ବୀର ଓ ସଂଗ୍ରାମୀ ଜାତିଟାର ଅଧଃପତନ ହେବାପାଇଁ ଆଉ ବେଶି ବିଳମ୍ବ ଲାଗିଲା ନାହିଁ।

କହିବା ବାହୁଲ୍ୟ, ପ୍ରତାପରୁଦ୍ରଙ୍କ ପରଠାରୁ ଓଡ଼ିଶାର ସ୍ୱାଧୀନତାର ସୂର୍ଯ୍ୟ ଅସ୍ତମିତ ହେଲା। ଓଡ଼ିଆ ଜାତି ତାର ସକଳ ଐତିହ୍ୟ ଓ ଗାରିମାକୁ ହରାଇ ବସିଲା। ତେଣୁ ଓଡ଼ିଶାକୁ ଚୈତନ୍ୟଙ୍କର ଆଗମନ ଏହାର ଆଧ୍ୟାତ୍ମିକ ଓ ସାଂସ୍କୃତିକ କ୍ଷେତ୍ରକୁ ଯେତେ ସମୃଦ୍ଧି କରୁନା କାହିଁକି ସାମାଜିକ ଓ ରାଜନୈତିକ ଜୀବନର ଯେ ଅଶେଷ କ୍ଷତି ସାଧନ କରିଥିଲା ଏଥିରେ ଦ୍ୱିମତର ଅବକାଶ ନାହିଁ। ଯୁବ ସମାଜ ଦୁର୍ମଦ ଶକ୍ତିର ପ୍ରତୀକ। ସେମାନେ ଭାଙ୍ଗିପାରନ୍ତି, ଗଢ଼ିପାରନ୍ତି। ଅଦମ୍ୟ ଉତ୍ସାହ ଓ ଉଦ୍ଦୀପନାରେ ଏମାନେ ସବୁ ଅସମ୍ଭବକୁ ସମ୍ଭବ କରିପାରନ୍ତି। ସେମାନଙ୍କ ଭିତରେ ଯେଉଁଠି ଅସୀମ ଶକ୍ତି ରହିଛି, ତାକୁ ଉପଯୁକ୍ତ ମାର୍ଗରେ ପରିଚାଳିତ କଲେ ସମାଜ ପାଇଁ ଏମାନେ ଅସାଧ୍ୟ ସାଧନ କରିପାରନ୍ତି। କିନ୍ତୁ ଅତ୍ୟନ୍ତ ଦୁଃଖ ଓ ପରିତାପର ବିଷୟ, ଆଜିର ଯୁବ ସମାଜ ଧୀରେ ଧୀରେ ନିଷ୍କ୍ରିୟ ଓ ନିର୍ବେଦ ହୋଇ ପଡୁଛନ୍ତି। ଏକ ଅହେତୁକ ହତାଶାବୋଧ ଧୀରେ ଧୀରେ ଏମାନଙ୍କୁ ଗ୍ରାସ କରି ଚାଲିଛି। ଏମାନଙ୍କ ଆଗରେ କିଛି ନିର୍ଦ୍ଦିଷ୍ଟ ଲକ୍ଷ୍ୟ ନାହିଁ, ଉଦ୍ଦେଶ୍ୟ ନାହିଁ। ଅନିଶ୍ଚିତ ଭବିତବ୍ୟ ଅପେକ୍ଷାରେ ଏମାନେ କ୍ଳାନ୍ତ ହୋଇ ପଡ଼ିଲେଣି।

ଏମାନଙ୍କୁ ବିଭିନ୍ନ କମ୍ପାନୀ ମାନଙ୍କର ଉତ୍ପାଦିତ ଦ୍ରବ୍ୟକୁ କାନ୍ଧରେ ଝୁଲେଇ, କମ୍ପାନୀର ନିର୍ଦ୍ଦେଶକ୍ରମେ ଅଧିକ ସ୍ମାର୍ଟ ଦିଶିବା ପାଇଁ ପେଣ୍ଟ ସାର୍ଟ ସହ 'ଟାଇ' ଖଣ୍ଡେ ବେକରେ ବାନ୍ଧି ଏହି ଦ୍ରବ୍ୟ ଗୁଡ଼ିକର ଗୁଣ ବଖାଣିବାରେ ନିଜର ସକଳ ଶକ୍ତି ସାମର୍ଥ୍ୟ ବିନିଯୋଗ କରୁଥିବାର ଦେଖିଲେ, ମନଟା ଏକ ଅବ୍ୟକ୍ତ ଯନ୍ତ୍ରଣାରେ ଛଟପଟ ହୋଇଯାଏ। ରାଜନୈତିକ ନେତାମାନଙ୍କ ପଛରେ ଗୋଡାଣିଆ ହୋଇ,

ଦିନକୁ ମାତ୍ର ପଚାଶ ଟଙ୍କା ବିନିମୟରେ ନିର୍ବାଚନ ସମୟରେ ସେମାନଙ୍କ ଗୁଣ ଗାନ କରିବା, ଶୋଭାଯାତ୍ରାରେ ସାମିଲ ହେବା ଆଦିକୁ ମଧ୍ୟ ସହଜ ଦୃଷ୍ଟିରେ ଦେଖି ହୁଏନାହିଁ। ଏମାନଙ୍କ ସ୍ୱାଭିମାନ ଓ ଆତ୍ମ ବିଶ୍ୱାସ ଟିକକ କିଏ ଛଡେଇ ନେଲା ? ଦେଶ ଓ ଜାତି ପାଇଁ ଅନେକ ପ୍ରତିଶ୍ରୁତି ବହନ କରିଥିବା ଏମାନଙ୍କ ସାମର୍ଥ୍ୟ ଏତେ ସୀମିତ ହୋଇ ପଡ଼ିଲା କାହିଁକି ? କିଏ ଦେବ ଏଥିରୁ ଏମାନଙ୍କୁ ମୁକ୍ତି ? ଏମିତି ଅନେକ ଉତ୍ପୀଡ଼କ ପ୍ରଶ୍ନ ମନ ଭିତରେ ଉଙ୍କିମାରେ।

ଠିକ୍ ସେମିତି, ଏବେ ଶ୍ରାବଣ ମାସରେ ଗେରୁଆ ହାପ୍‌ପ୍ୟାଣ୍ଟ ଓ ଗଞ୍ଜି ଖଣ୍ଡେ ଖଣ୍ଡେ ପିନ୍ଧି କାନ୍ଧରେ କାଉଡ଼ି ଧରି, ମୁଣ୍ଡରେ ଜରିକପଡ଼ା ଖଣ୍ଡେ ବାନ୍ଧି, 'ବୋଲବମ୍ "ବୋଲବମ୍" ଧ୍ୱନିରେ ଶିବଦର୍ଶନ କରି ଯିବାର ଦେଖିଲେ ପ୍ରତାପରୁଦ୍ର ଦେବଙ୍କ ଯୁବ ସୈନିକମାନଙ୍କ ମାନସିକ ସ୍ଥିତି କଥା ମନେ ପଡ଼ିଯାଏ। ଯେତେ ସଂଖ୍ୟକ "ବୋଲ୍‌ବମ୍" ଉକ୍ତ ଶ୍ରାବଣ ମାସରେ ଶିବଙ୍କ ମସ୍ତକରେ ଜଳ ଢ଼ାଳିବାର ବ୍ରତ ରଖନ୍ତି, ତାର ଯଦି ଏକ ପରିସଂଖ୍ୟାନଭିତ୍ତିକ ଅଧ୍ୟୟନ କରାଯାଏ, ଏଥିରେ ଯୁବକ ଯୁବତୀଙ୍କ ସଂଖ୍ୟା ଅଧିକ ହେବ ନିଶ୍ଚୟ। ଏମାନଙ୍କର ଏ ରୂପ ଭେକ ମୂଳରେ ଯେ ଆଧ୍ୟାତ୍ମିକ ଭାବଟା ବଳବତ୍ତର ହୋଇରହିଛି ଠିକ୍ ସେୟା ନୁହେଁ। ଅନ୍ୟାନ୍ୟ ଫେସନ୍ ଭଳି ଏହାକୁ ମଧ୍ୟ ଏକ ଫେସନ୍ ଭାବରେ ସେମାନେ ଗ୍ରହଣ କରିଛନ୍ତି। ଯେହେତୁ ଏମାନଙ୍କ ହାତରେ କିଛି କରଣୀୟ କାର୍ଯ୍ୟ ନାହିଁ, କର୍ତ୍ତବ୍ୟର ଗୁରୁ ଦାୟିତ୍ୱ ନାହିଁ, ଲକ୍ଷ୍ୟ ନାହିଁ ସର୍ବୋପରି ଦିଗ୍‌ଦର୍ଶନର ଅଭାବ ରହିଛି, ଆଦର୍ଶ ବ୍ୟକ୍ତିତ୍ୱର ଅଭାବ ରହିଛି - ତେଣୁ ଏମାନେ ଯେକୌଣସି ଉପାୟରେ ନିଜର ସମୟ ଅତିବାହିତ କରିବାକୁ ଚାହାଁନ୍ତି, ସମାଜରେ ନିଜକୁ ଉପସ୍ଥାପିତ କରିବାକୁ ଚାହାଁନ୍ତି।

ଭଗବତ୍ ଚିନ୍ତନର ଉତ୍ତରଣ କେବଳ ବାହ୍ୟ ଉପଚାରରେ ନଥାଏ। ଆତ୍ମିକ ସ୍ତରରେ ଥରେ ଭଗବତ୍ ସନ୍ଧାନ ପାଇଗଲେ, ସବୁ ବାହ୍ୟ ଉପଚାର ତୁଚ୍ଛ ଲାଗେ। ମଣିଷ ଆତ୍ମୋଲବ୍ଧି କରେ। ନିଜ ଭିତରର ଶକ୍ତିକୁ ଚିହ୍ନି ତାର ଉପଯୁକ୍ତ ବିନିଯୋଗ କରେ। ଦେଶ ଗଠନରେ ପ୍ରମୁଖ ଭୂମିକା ଗ୍ରହଣ କରିବାର ସକଳ ସମ୍ଭାବନା ଓ ଯୋଗ୍ୟତା ଥିଲା ଏଇ ଯୁବ ସମାଜ ଉପରେ ବିବେକାନନ୍ଦଙ୍କର ଅଶେଷ ଭରସା ଥିଲା। ସୁଭାଷ ବୋଷ ଏମାନଙ୍କୁ ଏକ ଶୃଙ୍ଖଳିତ ରୂପ ଦେଇ ସୁନ୍ଦର ଦୃଷ୍ଟାନ୍ତ ସୃଷ୍ଟି କରି ଦେଇଗଲେ। ମହାତ୍ମାଗାନ୍ଧୀ ତ ଏମାନଙ୍କ ଦ୍ୱାରା ଅସାଧ୍ୟ ସାଧନ କରି ଦେଇଥିଲେ।

.................................................

ଆଜି କିନ୍ତୁ ଯୁବ ସମାଜ ଉପଯୁକ୍ତ ମାର୍ଗଦର୍ଶକର ଅଭାବରୁ ଦିଗ୍‌ଭ୍ରାନ୍ତ ଓ ଉଦ୍‌ଭ୍ରାନ୍ତ ହୋଇପଡ଼ିଛନ୍ତି। ଏମାନଙ୍କୁ କୂଳରେ ଲଗାଇବାକୁ ହେବ। ଇତିହାସରୁ ଲାଭ କରିଥିବା ଅନୁଭୂତିର ଶିକ୍ଷା ଦ୍ୱାରା ସେମାନଙ୍କ ଭବିଷ୍ୟତକୁ ସାର୍ଥକ କରିବାକୁ ହେବ। ସେମାନଙ୍କ ଆତ୍ମବିଶ୍ୱାସ ଫେରେଇ ଆଣିବାକୁ ହେବ। ସାଂଗଠନିକ କାର୍ଯ୍ୟରେ ସେମାନଙ୍କୁ ବିନିଯୋଗ କରିବାକୁ ହେବ। ସୃଜନାତ୍ମକ କାର୍ଯ୍ୟରେ ସେମାନେ ଯେପରି ଲିପ୍ତ ରହିବେ ସେଥିପାଇଁ ଅବସର ସୃଷ୍ଟି କରିବା ଆମ ସମସ୍ତଙ୍କର ନୈତିକ ଦାୟିତ୍ୱ।

ଅନୁପମ ଭାରତ

୭ ଅଗଷ୍ଟ, ୨୦୦୪



ବାସନ୍ତୀ ମହାନ୍ତି

ଜନ୍ମ ୧୯୬୯, ଅନ୍ଧୁଲି,କେନ୍ଦ୍ରାପଡ଼ା ।
ଓଡ଼ିଆ ଭାଷା ସାହିତ୍ୟରେ ଏମ.ଏ., ଏମ.ଫି
କଥାକାର ସୁରେନ୍ଦ୍ର ମହାନ୍ତିଙ୍କ ବିଷୟରେ
ଗବେଷଣାରତ ।
ଗଳ୍ପ ସଂକଳନ
ରାଜଜେମା, ବିଲେଇ ଓ ଜୁଲିପ୍ରସଙ୍ଗ ୨୦୦
ପ୍ରକାଶିତ ।
ଅଧୁନା ଶୈଳବାଳ କଲେଜ, ଡାବୁଗାଁ,
ନବରଙ୍ଗପୁରରେ ଓଡ଼ିଆ ଭାଷା ସାହିତ୍ୟ
ଅଧ୍ୟାପିକା ।

